# ଶୋଷା ବତରଣୀ

ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

# ଶେଷାବତରଣ

ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)



ପ୍ରସାଦ ପ୍ରକାଶନୀ
ମଧୁପାଟଣା, କଟକ- ୭୫୩୦୧୦

# ଶେଷାବତରଣ

ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
'ଗୀତିକା', ଜୟଦେବ ନଗର,
ଭୁବନେଶ୍ୱର-୭୫୧ ୦୦୨

ପ୍ରକାଶକ :
**ପ୍ରସାଦ ପ୍ରକାଶନୀ**
'ପୁଷ୍ପକ', ମଧୁପାଟଣା,
କଟକ-୭୫୩ ୦୧୩

ପ୍ରଥମ ପ୍ରକାଶ :
**ନବବର୍ଷ**
୧୯୯୮

ପ୍ରଚ୍ଛଦ :
**ଡଃ ଦିନନାଥ ପାଠୀ**

ଅକ୍ଷର ଓ ଅଙ୍ଗସଜ୍ଜା :



କଲ୍ୟାଣୀ ନଗର,
କଟକ-୭୫୩ ୦୧୩

ମୁଦ୍ରଣ :
**ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍**
କଲ୍ୟାଣୀ ନଗର,
କଟକ-୭୫୩ ୦୧୩

ମୂଲ୍ୟ
ଟ. ୪୦/-
(ଚାଳିଶ ଟଙ୍କା ମାତ୍ର)

**SESHABATARANA**
by :
**Dr. Janakiballav Mohanty**
(Bharadwaj)

1st Edition - **1998**

Publisher
**Prasad Prakasani**
Pushpak, Madhupatna
Cuttack-753 013

Cover Design :
**Dr. Dinanath Pathi**

Price :
**Rs. 40/-**
(Rupees Forty Only)

# ସଙ୍କଳନ ସମ୍ପର୍କରେ

୧୯୯୦ ମସିହାରେ ମୋର କବିତା ସଙ୍କଳନଟିଏ ପ୍ରକାଶ ପାଇଥିଲା । ମନେ ହୋଇଥିଲା ଏହା ବୋଧହୁଏ ମୋର ଶେଷ କବିତା ସଙ୍କଳନ । ସେଥିପାଇଁ ଏହାର ନାମ ରଖା ଯାଇଥିଲା 'ଶେଷଲିପି' । ମାତ୍ର କବିତାର ଝର ବୋଧହୁଏ ଭିତରୁ ଶୁଖି ଯାଇନଥିଲା; ଶେଷ ହୋଇ ଯାଇ ନଥିଲା ସେଇ ମଧୁର ପ୍ରସ୍ରବଣ । ଝଂଜା ବିକ୍ଷୁବ୍ଧ ଅଞ୍ଚଳରେ ତଥାପି ବିଦ୍ୟମାନ ଥିଲା ଏକ ହରିତ ଉପତ୍ୟକା । ଇତି ମଧ୍ୟରେ କେଜାଣି କିପରି ପ୍ରାୟ ଅର୍ଦ୍ଧଶତାଧିକ କବିତା ଲେଖି ହୋଇଯାଇଛି । କବିତା ସହ ମୋର ସଂପର୍କ ଯେ ବହୁ ପୁରାତନ — ଏହା ନ କହିଲେ ବୋଧହୁଏ ଚଳିବ ।

ମୋର ପ୍ରଥମ କବିତା ପ୍ରକାଶ ପାଇଥିଲା ୧୯୩୮ ମସିହାରେ, 'ମହୋଦଧି' ପତ୍ରିକାରେ । ସେତେବେଳେ ମୁଁ ଥିଲି ଅଷ୍ଟମ ଶ୍ରେଣୀର ଛାତ୍ର । ସେହି ସମୟଟି ଥିଲା ଛନ୍ଦୋବଦ୍ଧ ରୀତିରେ କବିତା ରଚନାର ଯୁଗ । କବିତା ରଚନା କ୍ଷେତ୍ରରେ ମୁକ୍ତ ଛନ୍ଦର ପ୍ରଚଳନ ସଦ୍ୟ ଆରମ୍ଭ ହୋଇଥାଏ । ତଥାପି ଛନ୍ଦୋବଦ୍ଧ କବିତା ପାଇଁ ଜନମାନସରେ ଶ୍ରଦ୍ଧା ଅତୁଟ ରହିଥିଲା । ମାତ୍ର ଏହାପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଓଡ଼ିଶାରେ ପତ୍ରିକା ଓ ପୁସ୍ତକ ପ୍ରକାଶନ କ୍ଷେତ୍ରରେ ଦେଖା ଦେଇଥିଲା ଘୋର ବିପର୍ଯ୍ୟୟ । ଦେଶର ସେଇ ଦୁର୍ଦ୍ଦିନ, ଦୁର୍ଭିକ୍ଷ ଓ ବିଶ୍ୱଯୁଦ୍ଧର ବିଭୀଷିକା ଭିତରେ ଓଡ଼ିଆ କବିତାର ଘଟିଥିଲା ନବ ରୂପାନ୍ତର । ଛନ୍ଦ କବିତାର ପୃଷ୍ଠଭୂମିରେ ମୁକ୍ତଛନ୍ଦର କବିତା ଜନପ୍ରିୟତା ଅର୍ଜନ କରିଥିଲା । ଏହି ପରିବେଶରେ ମୁଁ ଓ ମୋ ପରି ଆଉ କେତେକେ କବିତା ରଚନାରେ ମନୋନିବେଶ କରିଥିଲୁ ।

୧୯୪୭ ମସିହାରେ ନୀଳକଣ୍ଠ ଦାସଙ୍କ ସଂପାଦିତ 'ନବ ଭାରତ' ମାସିକ ପତ୍ରର ନୂତନପ୍ରସ୍ତ ଶୀର୍ଣ୍ଣାକାରରେ ପୁନଶ୍ଚ ପ୍ରକାଶ ପାଇଥିଲା । ସେହିବର୍ଷ ଏହି ପତ୍ରିକାର ଗୋଟିଏ ସଂଖ୍ୟାରେ 'ଉପେନ୍ଦ୍ର ଭଂଜ' ଶୀର୍ଷକ ମୋର ଏକ କବିତା ପ୍ରକାଶ ପାଇଥିଲା । ସେତେବେଳେ ମୁଁ ଥିଲି ବି.ଏ. ଶ୍ରେଣୀର ଶେଷ ବର୍ଷର ଛାତ୍ର । ପ୍ରତିକୂଳ ଓ ସଂଘର୍ଷ ସଙ୍କୁଳ ପରିସ୍ଥିତିରେ ମୋତେ ସେତେବେଳେ କାଳ କାଟିବାକୁ ପଡୁଥିଲା । ଏହି ସମୟରେ ଓ ଏହାର ଅବ୍ୟବହିତ ପରେ ଲିଖିତ ମୋର କେତେକ କବିତାକୁ ନେଇ ୧୯୫୧ରେ ପ୍ରକାଶ ପାଇଥିଲା 'ତିର୍ଯ୍ୟକ'— ମୋର ପ୍ରଥମ କବିତା ସଂକଳନ । ଏହାପରେ ବେଶ୍ କିଛି ବ୍ୟବଧାନରେ ପ୍ରକାଶ ପାଇଥିଲା ମୋର ଆଉ ତିନି ଗୋଟି କବିତା ସଂଗ୍ରହ ।

ଅଧ୍ୟାପନାକୁ ବୃତ୍ତି ଭାବେ ଗ୍ରହଣ କରିବା ପରେ ପ୍ରବନ୍ଧ ରଚନା ଓ ଗବେଷଣା ପ୍ରତି ମୁଁ ଆକୃଷ୍ଟ ହୋଇ ପଡ଼ିଥିଲି । ଓଡ଼ିଶାରେ ଉପାଧ୍ୟୁତ୍ତର ଶ୍ରେଣୀରେ ଅଧ୍ୟାପନା ଲାଗି ଏହାର ଆବଶ୍ୟକତା ସେତେବେଳେ ବିଶେଷ ଭାବେ ଅନୁଭବ କରାଯାଉଥିଲା । ଏହାର ପରିଣତି ସ୍ୱରୂପ ପଦ୍ୟ ଅପେକ୍ଷା ଗଦ୍ୟ ରଚନା କ୍ଷେତ୍ରରେ ମୋତେ ଅଧିକ ଅଭିନିବିଷ୍ଟ ହେବାକୁ ପଡ଼ିଲା; ସାହିତ୍ୟ ଆଲୋଚକର ଭୂମିକା ନିର୍ବାହ କରିବାକୁ ହେଲା । ମୋର ଦୁର୍ଭାଗ୍ୟ, ମୁଁ ଅନ୍ୟମାନଙ୍କ ସାହିତ୍ୟ କୃତିର ଆଲୋଚନାରେ ବ୍ରତୀ ହୋଇ ନିଜେ ବହୁ ଭାବରେ ଅନାଲୋଚିତ ରହିଗଲି । ତଥାପି ମୋର କାବ୍ୟକୃତିକୁ ଯେ କେହି କେହି ସଦୟ ସ୍ୱୀକୃତି ପ୍ରଦାନ କରିଛନ୍ତି — ଏଥିପାଇଁ ମୁଁ କୃତଜ୍ଞ ।

କେତେକ ବନ୍ଧୁ ଓ କବିତା ଅନୁରାଗୀଙ୍କ ଅନୁରୋଧ କ୍ରମେ ଅବଶେଷରେ ମୋର ଏଇ କବିତା ସଂକଳନଟିର ପ୍ରକାଶନ ସମ୍ଭବ ହୋଇପାରିଛି । ଏଥିପାଇଁ ମୁଁ ସେମାନଙ୍କ ଠାରେ କୃତଜ୍ଞ । ବହୁ ପତ୍ରିକାର ସଂପାଦକ ଏଇ କବିତାମାନଙ୍କରୁ କେତେକ ସେମାନଙ୍କ ପତ୍ରିକାରେ ସର୍ବାଦୌ ସ୍ଥାନିତ କରି ମୋତେ ଅନୁଗୃହୀତ କରିଛନ୍ତି । ମାତ୍ର କବିତାଗୁଡ଼ିକୁ ପୁସ୍ତକାକାରରେ ପ୍ରକାଶ କରିବା ସଂପର୍କରେ ମୋତେ ଆବଶ୍ୟକ ପରାମର୍ଶ ଦେଇ ଉପକୃତ କରିଛନ୍ତି ବନ୍ଧୁ ଶ୍ରୀ କାର୍ତ୍ତିକ ଚନ୍ଦ୍ର ଚାନ୍ଦ ଓ ଶ୍ରୀ ନାରାୟଣ ପ୍ରସାଦ ସିଂହ । ଏକ ସଙ୍କେତଧର୍ମୀ ପ୍ରଚ୍ଛଦ ଅଙ୍କନ କରି ଅନୁଗୃହୀତ କରିଛନ୍ତି ବିଶିଷ୍ଟ ଚିତ୍ରଶିଳ୍ପୀ ଶ୍ରଦ୍ଧେୟ ଡଃ ଦିନନାଥ ପାଠୀ । ଏହି ପୁସ୍ତକର ଶୋଭନୀୟ ମୁଦ୍ରଣ ପରିପାଟୀ ପାଇଁ କବିପ୍ରାଣ ଶ୍ରୀମାନ୍ ଗିରିଜା କୁମାର ବଳୀୟାରସିଂହ ଧନ୍ୟବାଦାର୍ହ ।

ପ୍ରସଙ୍ଗକ୍ରମେ ଏଠାରେ ମୋର କାବ୍ୟ ସୃଷ୍ଟି ସଂପର୍କରେ ଦି'ପଦ ଲେଖିବା ଆବଶ୍ୟକ ବୋଧ କରୁଛି । କବିତା ମାଧ୍ୟମରେ ମୁଖ୍ୟତଃ ମୋର ଅନୁଭବ, ଅନ୍ୱେଷଣ ଓ ବିବିଧ ପ୍ରତିକ୍ରିୟାକୁ ହିଁ ପ୍ରକାଶ କରିଅଛି । ସ୍ୱାଭାବିକ ଭାବରେ ଯେଉଁ ଆବେଗ ଯେପରି ମନକୁ ଛୁଇଁଛି ତାହା ସେହିପରି ବ୍ୟକ୍ତ କରିଛି । ଚେଷ୍ଟା କରି ବୌଦ୍ଧିକ ବା ରୀତି ସର୍ବସ୍ୱ ହେବାକୁ ପ୍ରୟାସ କରିନାହିଁ । ପ୍ରବହମାନ ପାରମ୍ପରିକ ଛନ୍ଦ ବିଧିକୁ ଯେପରି ଅନୁସରଣ କରିଛି, ସେହିପରି ମୁକ୍ତଛନ୍ଦ ରୀତିକୁ ମଧ୍ୟ ଅନୁସରଣ କରିଅଛି ।

ଆଶା କରେ, ପରିଣତ ବୟସରେ ରଚିତ ଏଇ କବିତା ସମୂହ ଗୁଣ ଓ ସ୍ୱାଦ ଦୃଷ୍ଟିରୁ ସମକାଳୀନ ପାଠକମାନଙ୍କ ଦ୍ୱାରା ଗ୍ରହଣୀୟ ହେବ ।

# ସୂଚୀପତ୍ର

# ଓଡ଼ିଶା

ଶ୍ୟାମ ଶସ୍ୟ ସୁଶୋଭିନୀ ମନ୍ଦିର ମାଳିନୀ
ମୋର ସବୁ ସପନର ଉଷା
ହେ ମୋର ଓଡ଼ିଶା !

ସହି କେତେ ଘାତ ପ୍ରତିଘାତ
ହସ ତୋ ଯାଇଛି ମରି
ସଙ୍ଗୀତ ଯାଇଛି ଝରି
ଅନେକ ଦିନରୁ ।

ତଥାପି ତ କୁହାଳିଆ ଦଳେ
କରୁଛନ୍ତି ହୁରି
ତୋତେ ବହୁ ଉପରକୁ
ଉଠାଇଲେ ବୋଲି
କରୁଛନ୍ତି କେତେ ବାହାଦୁରୀ
ସବୁ ଖାଲି କଥାର ଚାତୁରୀ ।

ତୁ ତ ସେହିପରି ଅଛୁ
ଥିଲୁ ଯେଉଁପରି
ଖଣି, ବଣ, କ୍ଷେତ ଥାଇ
ଥାଇ ତୋର ଝାଞ୍ଜ ଓ ମହୁରୀ ।

ଶ୍ରୀ ଜଗନ୍ନାଥଙ୍କ ପାଶେ କରୁଛୁ ଗୁହାରି
ବଢ଼ି, ମରୁଡ଼ି ଦାଉରୁ ଥାକିଯିବୁ ବୋଲି ।

ତୋ ତୁଳସୀ ଚଉରା ତ ଅଛି ସେହିପରି
ଜଳୁଛି ଆକାଶ ଦୀପ
ଝାଟିମାଟି ଘରପାଖେ ନଈ,
କୂଳରେ ତୋ ସୁନୀଳ ସାଗର
ତଥାପି ତ ତୋ ସନ୍ତାନ ନିରନ୍ତର ଆତୁର ଅନ୍ତର
ଭୟ ବସା ବାନ୍ଧି ଅଛି ମନେ
ଅବସାଦ କେଦାରେ କାନନେ ।

ନାହିଁ ଆଉ ପାଇବ ପହିଜ
ପାଠପଢ଼ି ତୋ ପୁଅଙ୍କ
ହଜି ଗଲା ତେଜ !
କେତେ ତୋର ମାଟି
ଶୃଙ୍ଖଳା ତ ସେହିପରି ଅଛି
ଗିରିଜନ, ହରିଜନ ନାମେ
ଖାଲି ଯାହା ହେଉଅଛି ପାଟି ।

କେତେ ଗଲେ ରାଜା ପୁଣି ବିଦେଶୀ ଶାସକ
ସମସ୍ତେ ଝୁଣିଲେ ଖାଲି
ତଥାପି ତ ମରିନାହିଁ ଭୋକ
ପୁଣି ଚାଲେ ନୂଆ କାରବାର

କେତେ·ନୂଆ ମାମଲତକାର
ତୋତେ ନେଇ ମାରୁଛନ୍ତି ତାଳି
ଗୁଣୀ କଳାକାର ଗଣେ
ନ ପଚାରି ରଥର ଉପରୁ
ଦେଉଛନ୍ତି ଠେଲି ।

ଦଳର ଶାସନ ନାମେ
ଦେଉଛନ୍ତି ଯୋଗ୍ୟତା ଓ ମମତାକୁ ଦଳି
ସମେସ୍ତ କି ଗଲେ ବାଟ ହୁଡ଼ି ?

ହେଲେ ବି ତୁ ନିପୀଡ଼ିତା, ଲୁଣ୍ଠିତା ଜନନୀ
ତଥାପି ତୁ ସର୍ବଂସହା, ଅମଳିନା
ମୌନ ରିକ୍ତବେଶା
ତୁହି ମୋର ଆଶା ଓ ଭରସା ।

ଆଶାରେ ମୁଁ କାଟୁଅଛି ବେଳ
ଦେଖିବାକୁ ତୋ ଅଙ୍ଗନେ
ଫୁଲଫୁଟା ନୂତନ ସକାଳ ।

# ଆଶ୍ଚର୍ଯ୍ୟ ମୁହାଣ ସିଏ

ଅନେକେ ଆସି ମିଶନ୍ତି ଯେଉଁ ମୁହାଣରେ
ଯେଉଁଠି ଦେହରେ ବାଜେ ବିଶ୍ୱାସର ଶୀତଳ ପବନ
ନୀଳଚକ୍ର ପାଖୁଁ ଯାହା ଧୀରେ ଆସେ ବହି
ସେଇଠି ଖୋଜିଲେ ମିଳେ ଆଉ ଏକ ଦ୍ୱାରର ସନ୍ଧାନ ।

ଯେଉଁଠି ମଣିଷ ଚାହେଁ କଳିବାକୁ ଆକାଶର ସୀମା
ଯେଉଁଠି ଶୁଭିଲା କେତେ ଭାବମୟ ଗୀତର ମୂର୍ଚ୍ଛନା
ଯେଉଁଠି ଭସାଇ ହୁଏ ଭବିତବ୍ୟ ଅତି ସହଜରେ
ମଉଜକୁ ଥୋଇଦେଇ ସବୁରି ଉପରେ ।

ଯେ ମୁହାଣ ଶୁଣିନାହିଁ ଏବେ ମଧ ନିନାଦ ଯନ୍ତ୍ରର
ଯେଉଁଠାରେ ସଂଚରିନି ଏବେ ମଧ କୁହୁଡ଼ି ବିଷର
ଆଶ୍ଚର୍ଯ୍ୟ ମୁହାଣ ସିଏ ମସିଲିପ୍ତ ଏଇ ଧରଣୀର
ଏପରି ମୁହାଣ ଆଉ କାହିଁ ନାହିଁ ଏତେ ଆପଣାର ।

ସେ କେମିତି ଏ ନଉକା ବାନ୍ଧିଛି କେଜାଣି
ସେ ବନ୍ଧନ ଏଯାଏଁ ତ ଶିଥିଳ ହୋଇନି !
ଯେଉଁଠି ଯାଇଛି ହଜି ମୋର କେତେ ସତେଜ ସକାଳ
ବିସ୍ମୟ, ମାଧୁର୍ଯ୍ୟ କୋହ
ଅନୁଭବି ଯେଉଁଠାରେ କଟିଅଛି କାଳ
ସେ ଆମର ପୁଣ୍ୟ ପୁରୀ ସେ ଅମର ପୁରୀ
ଯେଉଁଠି ମୁଁ ଭୁଲିଯାଏ ମୋ ବୟସ, ମୋର ବାହାଦୁରୀ ।

# ସଂସ୍ମରଣ : କୋଣାର୍କର

ଅବଶେଷେ ସୁସମାପ୍ତ ହେଲା ଦିନେ
ରାଜକୀୟ ଏ କାବ୍ୟ ରଚନା
ଉଡ଼ିଲା କେତନ ଉଚ୍ଚେ ମୋ ଶିଖର ଦେଶେ
ବାଜିଲା ବାଦିତ୍ର ବହୁ
ଘଣ୍ଟ, ଘଣ୍ଟା, ବେଣୁ, ବୀଣା, ତୂରୀ ଓ ମର୍ଦ୍ଦଳ
କେତେ ଧୂପ-ଦୀପ ପୁଣି ମନ୍ତ୍ର ଉଚ୍ଚାରଣେ
ଅପୂର୍ବ ପ୍ରତିମା ହେଲେ ସଂସ୍ଥାପିତ
ଗର୍ଭଗୃହେ ସିଂହାସନ ପରେ ।

ନିୟୋଜିତ ହେଲେ ପୁରୋହିତ, ନିଯୋଗ ମଣ୍ଡଳୀ
ଏହାପରେ ଯାନିଯାତ୍ରା, ଭୋଗରାଗ, ଉତ୍ସବର ଘଟା
ସମବେତ ହେଲେ ଭକ୍ତ, ଉପାସକଗଣ
ମୋତେ ପ୍ରଦକ୍ଷିଣ କରି ଆରମ୍ଭିଲେ କ୍ଷେତ୍ର ପରିକ୍ରମା
ମୋ ପ୍ରତିମା ନେଇ କଲେ ରଥଯାତ୍ରା ଅତି ଆଡମ୍ବରେ ।

ଆସିଲେ ବଣିକ ଦଳ ସଜାଇଲେ ବିପଣି ସୁନ୍ଦର
ହେଲି ଧନ୍ୟା, ମନୋରମା, ଅତି ଅନୁପମା
ସ୍ୱପ୍ନ ହେଲା ଚରିତାର୍ଥ ମୋର ।

କିନ୍ତୁ ହାୟ କିଏ ଜାଣିଥିଲା
ମୋତେ ଚାହିଁ ନଅରରୁ କରୁଣ ନୟନେ
ରାଜା ଦିନେ ଘେନିଲେ ବିଦାୟ ।

ଏହାପରେ ହେଲି ମୁହିଁ ହତପ୍ରଭ
ଦୀପ୍ତି ମୋର ଦିନୁ ଦିନୁ ହେଲା ବିମଳିନ
ମ୍ଳାନ ହେଲା ଅଧର ରକ୍ତିମା
ନ ବୁଝିଲେ କେହି ମୋ କଷଣ
ନ ବୁଝିଲେ—
ଯତନେ ପାଳିବା କେତେ ଆବଶ୍ୟକ ଜନ୍ମ ଦେବାଠାରୁ
ଗଢ଼ିବାରୁ କେତେବଡ଼ ଅତୁଟ ରଖିବା ।

ଅସମର୍ଥ ହେଲେ ଯେବେ ରକ୍ଷକ ମଣ୍ଡଳୀ
କ୍ଷୁଣ୍ଣ ହେଲା ସମ୍ପଦ ମୋହର, ଥର ଥର ହେଲା ମୋର ଅଙ୍ଗ
ପୁଣି ମୁଁ ଥରିଲି ଭୟେ ପ୍ରକୃତିର ତୀବ୍ର ଅଟ୍ଟହାସେ
କେହି ଯା'ର ପ୍ରତିରୋଧ ନପାରିଲେ କରି
କିଏ ବା କରିବ ? କାହାନ୍ତି ସେ ଲୋକ ?

ଚାହିଁଲି ମୁଁ ଚଉପାଶେ, ଶୂନ୍ୟ ଏ ବାଲୁକା ଶଯ୍ୟା
କେବଳ ଦୂରରୁ ଚାହିଁ, ଅସହାୟ ଦଳେ ଭୀରୁ
ଦେଖୁଛନ୍ତି ମୋର ଦୁର୍ଦ୍ଦଶାକୁ,
ଜରାଜୀର୍ଣ୍ଣ ମ୍ଳାନ ତନୁଶ୍ରୀକୁ
ଏମାନେ ତ ଭୋଗକ୍ଳାନ୍ତ, ଅବସନ୍ନ
ଏମାନଙ୍କ ଶକ୍ତି କାହିଁ
କରିବାକୁ ସଯତନେ ସୁରକ୍ଷା ପ୍ରଦାନ
ମୋତେ ଅବା ମୋ ସୁହୃଦଗଣେ !

ସେମାନେ ବୁଝିବେ କାହୁଁ ତ୍ୟାଗର ମହିମା
ସେ'କି କେବେ ତ୍ୟାଗ କରିପାରେ
ଧନ, ମନ, ଅବା ତା'ର ପ୍ରାଣ
ସ୍ୱଳ୍ପ ମାତ୍ର ସମ୍ବଳ ଯାହାର
ସଦା ନିୟୋଜିତ ଯିଏ ଆତ୍ମରକ୍ଷଣରେ ?

ଏଣୁ ଆଜି ଦୀନ ବେଶେ ଏ ବିଜନ ସିକତାରେ
ଢ଼ାଳେ ମୁହିଁ ମୌନ ଦୀର୍ଘଶ୍ୱାସ
ବିସର୍ଜିଣ ସବୁ ଆଶା
ହେବା ପାଇଁ ପୁଣି ଶ୍ରୀମଣ୍ଡିତ ।

ଜାଣେ ଆଉ ନ ଫେରିବ
ହଜିଯାଏ ଯଦି ଯଉବନ
ଶୁକ୍ଳ କେଶ ହେବନି କୃଷ୍ଣାଭ
ଏଣୁ ଊର୍ଦ୍ଧ୍ୱେ ହସ୍ତ ଉତ୍ତୋଳିଣ

ମୁଁ ଜଣାଏ—
ହେ ଦେବତା ! ଲୋଡ଼େ ନା ମୁଁ କୃତ୍ରିମତା
ଯଦି ଥାଏ ପୁନର୍ଜନ୍ମ
ମୋତେ ମିଳୁ ସେଇ ଅନୁଗ୍ରହ ।

●

# ପ୍ରଶ୍ନ : ଭୁବନେଶ୍ୱରକୁ

ହିଂସା-ପ୍ରମତ୍ତ ରାଜନ ଯେଉଁଠାରେ ହେଲେ ପରାଭୂତ
ନେଇଥିଲେ ଦୀକ୍ଷା ଅହିଂସାର
ଗାଇଥିଲେ ଗୀତ କରୁଣାର
ଅତି ମନୋହର ସେହି ପୁଣ୍ୟଭୂମି
ଏ ଭୁବନେଶ୍ୱର ।
ଏ ଭୂମିକୁ ଘେରିଛନ୍ତି
ନଦୀ, ବନ, ପାହାଡ଼, ଝରଣା
ସବୁଜ ଶ୍ୟାମଳ କ୍ଷେତ
ଭୀମଟାଙ୍ଗି, ଗୁମ୍ଫା, ଗଡ଼
କେତେ ଯେ ପୁରୁଣା ।
ଥିଲା ଯହିଁ ଏକାମ୍ର କାନନ
ବହି ଆସୁଥିଲା ଯହୁଁ ସୁଶୀତଳ ଧୀର ସମୀରଣ
ସନ୍ଧ୍ୟାଗମେ କରିବାକୁ ଏ ଭୂମିକୁ ସୁରଭି ପ୍ରଦାନ ।
କରିବାକୁ ଏ ଭୂମିକୁ ପୂତ, ରମଣୀୟ
କେତେ ରାଜା, ବଣିକ, ବିନ୍ଧାଣୀ
ଗଢ଼ିଛନ୍ତି ଅନନ୍ୟ ଓ ଅନୁପମ ବହୁ ଦେବାଳୟ
କାଳର ଆଘାତେ ପୁଣି ଅନାଦରେ
ହୋଇଲାଣି ଯାର ତନୁ କ୍ଷୟ ।
ବହୁଯୁଗ ପରେ ପୁଣି
କରିବାକୁ ଏ ଭୂମିର ନବ ରୂପାନ୍ତର
ଏବେ ହେଉଅଛି ତହିଁ ଉଦ୍ୟମ ପ୍ରଚୁର ।
ମନ୍ଦିର ହେଉନି ଗଢ଼ା
କେବଳ ହେଉଛି ଛିଡ଼ା   ବହୁତଳ ଭବନ ସମ୍ଭାର ।

ବଢୁଛି ବେପାର
ବଢୁନାହିଁ ରୂପ ଶୋଭା
କଳା ଅବା ବିଭବ ପ୍ରୀତିର
ବଢୁଅଛି ହିଂସ୍ର ବ୍ୟବହାର
କପଟତା, ଲୋଭ ମଣିଷର ।
କହୁଛନ୍ତି ବିଜ୍ଞଜନେ-
ଏ ଭୂମି ହୋଇବ ପୁଣି
କଳୁଷିତ, ଘୋର ପ୍ରଦୂଷିତ
ଅପସରି ଯିବ ସବୁ ଏ ଭୂମିର ମାନ ଓ ମହତ ।
କମି ଯିବେ ସାଧୁ-ସନ୍ଥ
ମଉଳିବ ସଜ୍ଜନଙ୍କ ତେଜ
ଯେତେ ବଢୁଥିବ ଏଠି ପ୍ରଶାସକ, ନେତାଙ୍କ ପହିଜ ।
ବେପାରୀ ଓ ସେହିମାନେ
ଦଳର ଶାସନ ନାମେ
ଲାଭ ପାଇଁ କ୍ଷମତାର ଲାଗି
ଜଳାଇବେ ଅଶାନ୍ତି ଅନଳ
ତାହା ତଳେ ବିଦଳିତ ହେଉଥିବ
ସନାତନ, ପ୍ରୀତିର ଫସଲ ।
ଏବେ ଆମେ ଭାଳୁଁ ବସି
କି ହେବ ପ୍ରାସାଦ ଗଢ଼ି
ନ ମିଳିଲା ଯଦି ତିଳେ ପ୍ରସାଦ ବିମଳ
କେବେ ପୁଣି ଓହ୍ଲାଇବ ଏ ଭୂମିରେ
ଆଉ ଏକ ସତେଜ ସକାଳ ।
ଜୟ ହେବ ଏ ଭୂମିରେ
ସତ୍ୟ, ଶିବ ପୁଣି ସୁନ୍ଦରର
ଜୟ ହେବ ପୁଣି ଅହିଂସାର ।
କହିକି ପାରିବ ତମେ
ହେ ପୁରାଣ, ହେ ଭୁବନେଶ୍ୱର !

# କି ହେଲା ଏ ଶ୍ରୀନଗର : ସ୍ୱପ୍ନର ଭୂସ୍ୱର୍ଗ

ଦିଗେ ଦିଗେ ପର୍ବତର ଶ୍ୟାମ ସମାବେଶ
କେଉଁଠି ବା ତୁଷାରର ଶୁଭ୍ର ଆସ୍ତରଣ
ଏହିଠାରେ ସବୁ କିଛି ସ୍ୱଚ୍ଛ, ନିରିମଳ
ଆକାଶ, ପବନ, ପାଣି
କେତେ ନୀଳ, ସ୍ନିଗ୍ଧ, ସୁକୋମଳ !
ଇଚ୍ଛାହୁଏ ରହିଯିବା ପାଇଁ
କେଉଁ ଏକ ଭାସମାନ ନୌକାଗୃହେ ଅବା ସିକାରାରେ
ଦିଗନ୍ତ ବିସ୍ତାରୀ  ରମ୍ୟ ଏ ଡାଲ୍ ହ୍ରଦରେ
ଯେଉଁଠି ପଡୁଛି ଛାଇ
କେତେ ସେଓ, ଚିନାର ଗଛର
ମୋଗଲ ବାଦଶା ଗଢ଼ା
ପୁରାତନ କେତେ ଉଦ୍ୟାନର ।

ଜନତାର ଲାଗି ଯାହା
ଥିଲା ଦିନେ ନିଷିଦ୍ଧ ଅଂଚଳ
ସେ ସବୁ ସଜ୍ଜିତ ଆଜି
ବର୍ଣ୍ଣମୟ ବିବିଧ କୁସୁମେ
ମୁକ୍ତ ତାହା ଅଗଣିତ ଦର୍ଶକଙ୍କ ଲାଗି
ଯେଉଁଠି ଅନେକ ସ୍ୱପ୍ନ
ଥିଲା ଜାଗି, ପୁଣି ଗଲା ଭାଜି ।

ଇତିହାସ କହେ ସେହି କଥା
ଆତଙ୍କସ୍ରଷ୍ଟାର ଦଳ
ଏବେ ତହିଁ ତୋଳିଛନ୍ତି ମଥା ।

ଏଠାରେ ନାହାନ୍ତି ଆଉ
ବୌଦ୍ଧ ଭିକ୍ଷୁ, ଶଙ୍କର ବା ମାର୍ତ୍ତଣ୍ଡ ପୂଜକ
ଅବା ସେହି ସମ୍ଭୋଗ ବିଳାସୀ
ସୁରା ସାକୀ ପ୍ରମତ୍ତ ଶାସକ ।
କାହାନ୍ତି ସେମାନେ ଆଜି
ଯେଉଁମାନେ ପର୍ବତରୁ ଝରୁଥିବା
ଜଳ ପ୍ରବାହକୁ
ସୁକୌଶଳେ ବନ୍ଦୀ କରି
ଆଣିଥିଲେ ରମଣୀୟ ଉଦ୍ୟାନ ମଧ୍ୟକୁ
ଯାହା ଝରି ଯାଉଅଛି
ତଳକୁ ତଳକୁ
ଥାକ ଥାକ ହୋଇ ପୁଣି
ସୁନିର୍ମିତ ପ୍ରସ୍ତର ଶଯ୍ୟାରେ
କରି ତାକୁ ଲୀଳାୟିତ, ଛନ୍ଦୋମୟ
ବିବିଧ ଭଂଗୀରେ ।

ଶୂନ୍ୟ ତ ପଡ଼ିଛି ଏବେ ନୃତ୍ୟଶାଳା
ସ୍ନାନାଗାର, ସୁନିର୍ମିତ ଲୀଳାନିକେତନ
ଥିଲା ଯାହା ରତ୍ନ ବିମଣ୍ଡିତ
ମନୋରମ ଗାଲିଚା ଶୋଭିତ ।
ସେହିଠାରେ ହଜିଗଲେ କେତେ
ସୁରୂପା, ଲାବଣ୍ୟବତୀ ହାରେମ୍ ବାସିନୀ
ନୀରବିତ ହୋଇଗଲା
ଯେଉଁଠାରେ ସେମାନଙ୍କ ପାଦର ଶିଞ୍ଜନି ।
ବରଫ ଆସୁଛି ଜମି
ପାହାଡ଼ ଓ ହ୍ରଦର ଜଳରେ
ଉତ୍ସାହ ଯେପରି ଏଠି

ବରଫ ପାଲଟି ଯାଏ
ନିରାଶାର ଶୀତଳ ଶଯ୍ୟାରେ ।

ସବୁ ଥାଇ କିପରି ଶୂନ୍ୟତା,
ବିଷନ୍ନତା ଖେଳୁଛି ପବନେ
ଆତଙ୍କ ଓ ସନ୍ଦେହର କଳା ଛାଇ
ପରିବ୍ୟାପ୍ତ ବହୁଜନ ମନେ ।

ଝେଲମ୍ ନଦୀର ତୀରେ
ଥିଲା ଯିଏ ରଙ୍ଗଭୂମି ରୂପ ବିଳାସର
ଥିଲା ଯିଏ ଶାନ୍ତିର ରାଇଜ
ଥିଲା ଯେ ସ୍ୱପ୍ନର ଭୂମି
ଥିଲା ରୋମାଞ୍ଚର
ଭ୍ରଷ୍ଟାଚାରୀଗଣ ଆଜି
ଲୁଟି ନେଉଛନ୍ତି ତା'ର ସକଳ ବିଭବ ।

ସେମାନଙ୍କ ଲାଗି ଆଜି
ତାର ନୀଳ ଜାଫ୍ରାନ କ୍ଷେତରେ
ସଂଚାରିତ ବିଷ ବାଷ୍ପ, ଶୁଭୁଅଛି ଗୋଳାର ଆବାଜ
ଆଜି ସେଠି ସ୍ତବ୍ଧ ହୁଏ ରୂପ ମୋହ
ଭାଙ୍ଗି ପଡ଼େ ସପନର ତାଜ ।

ଏଇଠି ମଣିଷ ଆଜି ଭୟତ୍ରସ୍ତ
ସଦା ମ୍ରିୟମାଣ
ଏଠି ଆଉ ଶୁଭୁନାହିଁ ବୁଦ୍ଧ ବାଣୀ, ଶାନ୍ତିର ସଙ୍ଗୀତ
ଡାଲହ୍ରଦେ ସିକାରାରୁ ଆସୁନାହିଁ
ଲଳିତ ନିଃସ୍ୱନ ।

ଶୁଭୁ ନାହିଁ ଭୟ ମୁକ୍ତ ମଣିଷର ଜୟ
ସ୍ୱପ୍ନର ଭୂସ୍ୱର୍ଗ ଆଜି ବିଭୀଷିକାମୟ ।

# ଅରଣ୍ୟର ଅନ୍ଧକାରେ

ଅରଣ୍ୟ ବ୍ୟାପିଛି ଏଠି ଦିଗନ୍ତ ବିସ୍ତାରି
ଶେଷ ତାର ଦେଖି ହୁଏ ନାହିଁ
କରୁଛନ୍ତି ବିରଚଣ ଯହିଁ ନିଶ୍ଚିନ୍ତରେ
କେତେ ସରୀସୃପ ପୁଣି କେତେ ଆତତାୟୀ ।

କିଏ ଅବା ନ ଡରିବ ତାଙ୍କୁ
ସେମାନେ ତ ରକ୍ତଚକ୍ଷୁ, ହିଂସ୍ର ଅତିଶୟ
କେଉଁଠୁ ଆସିଲେ ପୁଣି କାହିଁ ଚାଲିଛନ୍ତି
ଜାଣି ହୁଏ ନାହିଁ ତାହା ଶଙ୍କିତ ହୃଦୟ ।

ବ୍ୟାପିଅଛି ଅନ୍ଧକାର ନିରନ୍ଧ୍ର, ନିବିଡ଼
ତିଳେ ହେଲେ ଦିଶୁନାହିଁ ବାଟ
କେଉଁଠୁ ବା ଶୁଣାଯାଏ ଭୀମ ରଡ଼ି
ରେରେକାର ପ୍ରଚଣ୍ଡ କୁହାଟ ।

ଏ ବିଚିତ୍ର ଅରଣ୍ୟରେ ସଜ୍ଜିତ ରହିଛି ପୁଣି ସିଂହାସନ
ଅତିଥି ଭବନ, ବହୁ ପାନଶାଳା, ଅମୁହାଁ ଦେଉଳ

ଅନ୍ଧକାରେ ଯାଉଛନ୍ତି ଆତତାୟୀ ତେଣେ
ହୋଇଣ ଅତୀବ ବ୍ୟସ୍ତ, ବିବ୍ରତ, ଚଂଚଳ ।

ମଝିରେ ଯାଉଛି ବହି ନଦୀ ଏକ
ଶୁଭୁଅଛି କୁଳୁ କୁଳୁ ତାହାର କଲ୍ଲୋଳ
ମାତ୍ର ନୁହେଁ ଜଳ ତାର ସ୍ୱଚ୍ଛ ସୁଶୀତଳ
କରିଅଛନ୍ତି ଯାହାକୁ ସକଳେ ଆବିଳ ।

ଭୟାବହ ଏ ଦୁର୍ଗମ ପଥେ ମୁଁ ପଥିକ
ହୋଇଛି ତୃଷାର୍ତ୍ତ, କ୍ଳାନ୍ତ ଅତି ଦୁରୁବଳ
ହୋଇବି କିପରି ପାରି ଏଇ ନଦୀ ଏ ଘୋର ଅରଣ୍ୟ
ଭାବି ଏହା ହେଉଛି ଆକୁଳ ।

ଅଟ୍ଟାଳିକା-ଅରଣ୍ୟ ଗହଳେ
ବାଟୋଇ ମୁଁ ବାଟବଣା
ଚାଲୁଅଛି ଭୟାତୁର ହୋଇ
ଜାଣେ ନାହିଁ ଆଶ୍ରୟର ଭୂମି ଏକ
ପାଇବି ବା ମୁଁ ପାଇବି ନାହିଁ ।

# ପାଚେରି

ଚାରି ଆଡ଼େ ଉଠୁଛି ପାଚେରି
ସେଥିପାଇଁ ବହୁ ତତ୍‌ପରତା
ଦିଗେ ଦିଗେ କୋଳାହଳ
ପଡୁଅଛି ହୁରି ।

ଉଠୁଛି ପଡୁଛି ଦେଶ
ଦୁଲୁକୁଛି ଧରା
ଚାରିଆଡ଼େ ଧୂଆଁ, ଧୂଳି
ବିସ୍ଫୋରଣ ଭରା ।

ପାଚେରି ଉଠିବ ନିଶ୍ଚେ
ଦେଶେ ଦେଶେ ସେଥିପାଇଁ ବହୁତ ପ୍ରଚାର
ଚାଲୁଅଛି କେତେ ଯେ ବିଚାର
ହେଉ ଅଛି ବହୁ ଅଭିଯାନ
ଆଉ ଡେ଼ରି କର ନାହିଁ
ପାଚେରି ଉଠିବ ଏଣୁ
ହୁଅ ସାବଧାନ ।

ଧର୍ମ, ଜାତି, ଦଳ ପାଇଁ,
ଭାଷା, ବର୍ଣ୍ଣ, ଅଞ୍ଚଳର ପାଇଁ
ସୁନିଶ୍ଚିତ ଉଠିବ ପାଚେରି
ଅନ୍ୟଥା ହେବନି ଏହା
କଠୋର ଆଇନ ଏଣୁ
ହୋଇଅଛି ଜାରି ।

ନୂତନ ଯୁଗର ଏହା
ସୁମହତ ବାଣୀ
ମାଳମାଳ ପାଚେରିରେ
ଭରିଯିବ ମନୋରମ
ନିଖିଳ ଧରଣୀ ।
ଏହାପରେ ଶୋଭାଯାତ୍ରା
ଅଗଣିତ ଉଦ୍‌ବାସ୍ତୁ ଜନର
ଯେଉଁ ପ୍ରବାହରେ ପୁଣି
ପୂରିଯିବ ଏ ଧରାର
ପଥ ଓ ପ୍ରାନ୍ତର ।

କାହା ନିର୍ଦ୍ଦେଶରେ
ଜଳ, ସ୍ଥଳ, ଅନ୍ତରୀକ୍ଷ
ଭରିଯିବ ଅପୂର୍ବ ଗନ୍ଧରେ ।

●

# କୋକୁଆ

କେହି କି ଦେଖିଛ କେବେ କୋକୁଆକୁ
ଦେଖିବାକୁ କିପରି ସେ କହି କି ପାରିବ ?
କେଉଁଠି ସେ ଥାଏ ? କିସ ତା' ଆୟୁଧ ?

ଦେଖି ନାହଁ ତାକୁ ଯଦି ଏହାହିଁ ଯଥାର୍ଥ
କିପରି ଦେଖିବ ତାକୁ, ସେ ତ ଅଶରୀରୀ
ସବୁରି ମନରେ ସିଏ ଥାଏ ବସାକରି
ସିଏ ବିଷ୍ଣୁମାୟା, ଅସମ୍ଭବ ହଟାଇବା ତାକୁ
ହଟାଇ ପାରିଲେ କିନ୍ତୁ ତୁମେ ହେବ ପରମ ନିଶ୍ଚିନ୍ତ
ତା' ନୋହିଲେ ଆଶଙ୍କାରେ କାଟୁଥିବ କାଳ
'ହେଇ ସେ ଆସିଲା' ଭାବି ଶରୀରରୁ ବହୁଥିବ ଝାଳ ।

ଯଦି ତା'କୁ ନ ତଡ଼ିବ ମନ ଗହନରୁ
ସେ ତୁମକୁ ସୁନିଶ୍ଚିତ କାବୁ କରି ଦେବ
ଯେଣୁ ସିଏ ବିଷ୍ଣୁ ମାୟା ମହା ଶକ୍ତିଶାଳୀ ।
ଯା' ଭୟରେ ଅତୀବ କାକୁସ୍ଥ
ହୋଇଥିଲେ ଯାଦବ ମଣ୍ଡଳୀ
ଅବଶେଷେ ତ୍ୟାଗ କଲେ ରମଣୀୟ ଦ୍ୱାରକା ନଗରୀ
ପ୍ରୟାଣ କଲେ ପ୍ରଭାସ ତୀର୍ଥ ଅଭିମୁଖେ
ସଙ୍ଗେ ଘେନି ବାରାଙ୍ଗନା ନୃତ୍ୟ ବିଳାସିନୀ
ରାଶି ରାଶି ଖାଦ୍ୟ ପେୟ, ମଦିରା ଭୃଙ୍ଗାର ।

ଅବ୍ୟାହତି ଅବଶ୍ୟ ସେମାନେ
ଲଭିଥିଲେ କୋକୁଆ ଭୟରୁ
ସବୁଦିନ ପାଇଁ, ଦେଇ ଆତ୍ମବଳିଦାନ
ଏରକାର ବନେ ହେଲା ମୀମାଂଶା ଯାହାର ।

ଆଜି ସେହିପରି ଏକ କୋକୁଆ ଭୟରେ
ତ୍ରସ୍ତ ଜନଗଣ; ନେତୃବୃନ୍ଦ ଖୋଜୁଛନ୍ତି ନିତି
ଯା ନାମ ଦୁର୍ନୀତି ।
ଯଦିଓ ଜାଣନ୍ତି ସର୍ବେ
ସେ ରହିଛି ମନ ଗହନରେ
ସବୁରି ଅନ୍ତରେ ।

ଅଥଚ ପଡୁଛି ହୁରି- 'ଧର ଧର ତାକୁ'
କୁଆଡ଼େ ଗଲା ସେ ଦୁଷ୍ଟ, ଦୁର୍ନୀତି-କୋକୁଆ'
ଚୋରୀ କରି ଚୋର ଯଥା ହୁରି କରେ–
'ହେଇ ଚୋର ପଳାଇଲା' ବୋଲି
ସେହିପରି ବ୍ୟାପିଅଛି ଦୁର୍ନୀତି-କୋକୁଆ
ସେହିପରି ଖୋଜା ମଧ ଚାଲିଅଛି ତା'ର
ଖୋଜୁଛନ୍ତି ନେତା, ପ୍ରଶାସକ, ଆରକ୍ଷୀ ସମୂହ
ଅଥଚ କୋକୁଆ ଅଛି ସବୁରି ଆଶ୍ରୟେ
ନିରାପଦେ, ଅତି ଆରାମରେ
ନିଷ୍କୃତି ମିଳିବ କେବେ ଏଇ ଦୃଷ୍ଟ କୋକୁଆ କବଳୁ
ପୁଣି କେଉଁ ପ୍ରଭାସ ତୀର୍ଥରେ ?

●

# ଖୋଜେ ମଧୁମାସ

ବସନ୍ତର କେଉଁ ଏକ ଅଳସ ଲଗ୍ନେ
କୋଇଲିଟି ଗାଇଥିଲା ଗୀତ
ମନେ ନାହିଁ ଯାଇଛି ତା ଭୁଲି
ଢ଼ଳିଲା ବୟସେ କିନ୍ତୁ ସ୍ମୃତି ତା'ର
ମନ ତଳେ ଉଠଇ ଚହଲି ।

ମନେପଡ଼େ ଅନେକ ବସନ୍ତ
ଦେଇଥିଲେ ପ୍ରୀତିର ପରଶ
ଗ୍ରୀଷ୍ମର ଦହନେ କାହିଁ
ଲୁଚିଗଲେ ରଚି ଦୀର୍ଘଶ୍ୱାସ ।

ତାହାପରେ ତୃଷ୍ଣା ଖାଲି
ଧାଇଁବା ହିଁ ସାର ହେଲା
ମୃଗତୃଷ୍ଣା ପଛେ
ଏବେ ଦେଖେ ଝରିପଡ଼େ କିଶଳୟ
ମୁକୁଳିତ ଶାଖାରୁ ମଞ୍ଜରୀ
ଚାରିଆଡ଼େ କଳା ଛାଇ ନାଚେ ।

ଆଜି ଯେବେ ଲୋଟନ୍ତି ଧୂଳିରେ
ଏକାନ୍ତ ନିରୀହ ବହୁ ଶିଶୁ ନାରୀ ନର
ଭାସି ଆସେ ଅନ୍ନଦ୍ୱାର ଅକୁହା ବେଦନା
ବିଧବାର ଉଷ୍ମ ହାହାକାର ।
ତରୁଣୀର ନିର୍ଯାତନା
ବେକାରର ବିଫଳ ପ୍ରୟାସ
ଅନେକେ ତ ନିରୁପାୟ
କେତେ ପୁଣି ଘୂରୁଛନ୍ତି ଆପଣା କେନ୍ଦ୍ରରେ
ସକଳେ ଆସନ୍ତି ଏଣୁ
କରିବାକୁ ଏକାନ୍ତ ଉଦାସ ।
ସେତେବେଳେ ମନେପଡ଼େ
ପୁରୀ, ପଣ୍ଡିଚେରୀ ଅବା ପୁଟପର୍ତ୍ତୀ
ଧୂପର ସୁରଭି ପୁଣି ଫୁଲର ସୁବାସ
ଖୋଜେ ମୁହିଁ କୁହୁରବ ଖୋଜେ ମଧୁମାସ ।

●

# ଅପରାହ୍ନରେ

ସେ ଆସନ୍ତି ପ୍ରମତ୍ତ ନେତାଙ୍କ ଭଳି
ସମସ୍ତଙ୍କୁ ବ୍ୟତିବ୍ୟସ୍ତ କରି
ଅସଂଲଗ୍ନ ଭାଷଣ ପ୍ରବାହେ ।

ସେ ଆସିଲେ
ହସର କଳିକା ସବୁ କ୍ରମେ ଶୁଖିଯାନ୍ତି
ଦେହର ଝରକା ସବୁ
ହୋଇଯାନ୍ତି ଅତି ଅମାନିଆ
ପାଣିଚିଆ ହୋଇଯାଏ
ଅନେକ ଶବ୍ଦର ଅର୍ଥ
ଅସ୍ପଷ୍ଟ ହୋଇଆସେ
ଅନେକ ପରିଚିତ ମୁହଁ
ନାମ ସବୁ ତଳେଇ ଯାଆନ୍ତି
ସ୍ମୃତିର ସୁଡଙ୍ଗ ଭିତରେ ।

ତାଙ୍କ ସହ ଧୀରେ ଧୀରେ ଲମ୍ବିଆସେ
କ୍ଲାନ୍ତିର ଦୁଇ କଳା ହାତ
ଏଣୁ ଆଉ ଇଚ୍ଛା ହୁଏନା

ଅନେକଙ୍କ ଆଗକୁ ଯିବାକୁ
ଇଚ୍ଛା ହୁଏନା ନୂଆ ଯୋଜନା କରିବାକୁ
ନୂତନ ସମ୍ଭବର ପାଇଁ ।

ସେତେବେଳକୁ ହଜି ଯାଇଥାଏ
ଅନେକଙ୍କ ରୂପର ଚମକ
ବୁଢ଼ା ହୋଇ ଯାଇଥାନ୍ତି
ନିଜେ ଲଗେଇଥିବା ଅନେକ ଗଛ
ଦୂରକୁ ଚାଲି ଯାଇଥାନ୍ତି ଆତ୍ମୀୟ ସ୍ୱଜନ
ନିଜେ ସଂପାଦିଥିବା ଜିନିଷରେ
ଲାଗିଯାଇଥାଏ ପ୍ରଚୁର ଅଳନ୍ଧୁ
ଯାହାକୁ ଝାଡ଼ିବାକୁ
ଆଉ ନ ଥାଏ ଶକ୍ତି ବା ସମ୍ବଳ ।

ତଥାପି ସେଇ ଛୋଟ ପରିଧି ଭିତରେ
ମନ ଗୁଡ଼େଇ ହୋଇ ଯାଇଥାଏ
ସିଏ ହୋଇ ଯାଇଥାଏ
ଭୟାତୁର ଓ ହିସାବୀ
ବିଲ ସବୁ ଶୁଖିଲା ପଡ଼ିଥାଏ
ନୂତନ ବୃଷ୍ଟିକୁ ଅପେକ୍ଷା କରି
ଏହାହିଁ ତ ପରିଣତି ତାଙ୍କ ଆସିବାର ।



# ଭୁଲିବାର ବେଳ ହେଲା

ଶେଷ ହେଲାପରେ ଭଲପାଇବାର ବେଳ
ଆସିଯାଏ ଭୁଲିବାର ବେଳ
ଭୁଲିବାକୁ ହୁଏ ସେତେବେଳେ
ଯେତେ ଯାହା ଏଠି ମିଳିଥାଏ
କେତେ ନାମକୁ, ରୂପକୁ ଓ ବିଷୟକୁ
କାଳକୁ ଓ କଳାକୁ ।

ତା'ପରେ ଲୁପ୍ତ ହୋଇଯାଏ କ୍ରମେ
ଦିନ ଓ ରାତିର ଭେଦ
ଲୁପ୍ତ ହୋଇଯାଏ ସବୁ ସଂସ୍କାରର ବିଚାର
କରିବାର ବା ଆଉ କ୍ଣ ଥାଏ
ମୋର ବୋଲି କିଛି ତ ରହେନା
ନଥାଏ ବି କିଛି କହିବାର
ମୁଁ ହୋଇ ଯାଇଥାଏ ଆଉ କାହାର ।
ଯାହା ସବୁ ରହିଯାଏ
ସିଏ ସବୁ ଅନ୍ୟ କାହା ପାଇଁ ।

ସେତେବେଳେ ଖାଲି ନିସ୍ତବ୍ଧତା
ସ୍ୱପ୍ନହୀନ ଶୟନ କେବଳ ।

ଠିକ୍ କରି ହୁଏ ନାହିଁ
କ'ଣ ଏଠି କରିଥିଲି
ପଡ଼ିଥିଲି ଗହନ ପଙ୍କରେ
ଅବା ତୋଳିଥିଲି ପଙ୍କରୁ ପଙ୍କଜ
ଆଉ କ'ଣ ମନେ ଅଛି

କିଏ ସବୁ କ'ଣ ଲେଖିଥିଲେ ।
ଆଉ ତ ପଡୁନି ମନେ
କଅଣ ମୁଁ ନିଜେ ଲେଖିଥିଲି ।

ମନେ ନାହିଁ ମତେ କିଏ ଠକିଥିଲେ
ଠକିଥିଲି ମୁଁ ଅବା କାହାକୁ ।
ଏବେ ତ ମାଳତୀ, ମଲ୍ଲୀ ଫୁଲ ସବୁ
କୁଆଡ଼େ ଗଲେଣି
ଶୁଭୁନାହିଁ କୋଇଲିର ଡାକ
ସ୍ୱରର ମାଧୁରୀ କାହିଁ ?
କାହିଁ ଅବା ପୁଷ୍ପର ସୁରଭି ?
କେଉଁଆଡ଼େ ରହିଗଲା ନଈରେ ପହଁରା
ପାହାଡ଼ରେ ଚଢ଼ିବା ଓ ନୌକାରେ ବୁଲିବା
ଦୀପଦଣ୍ଡି ଶିଖରରୁ ପାଣିକୁ ଡେଇଁବା !

ଅନେକେ ଗଲେଣି ଚାଲି
ସମସ୍ତେ ବି ଯିବେ ଚାଲି
ଯେ ଯାହା ବାଟରେ
କେବଳ ରହିବ ପଡ଼ି କେତେ ଦିନ ପାଇଁ
ଠାଆକୁ ଠାଆ କେତୋଟି ସ୍ମୃତିର ସଂକେତ ।

ଏମିତି ସବୁ କିଛି ଝରିଯାଏ
ଖସି ପଡ଼େ, ଶୁଖି ଯାଏ
କଟିଯାଏ ଚେର ସବୁ
ସବୁଜ ପତ୍ର ସକଳ କ୍ରମେ ଝଡ଼ିଯାଏ
ଚେର ନ କଟିଲେ ଅବା ପତ୍ର ନ ଝଡିଲେ
ଗଛ କ'ଣ ସହଜରେ ତଳେ ପଡ଼ିପାରେ !

●

# କାହା ପାଇଁ ଶଙ୍ଖ ବାଜେ

ଯେତେ ଯହିଁ ବର୍ଲୀନ ପ୍ରାଚୀର
ସବୁ ଭାଙ୍ଗିଯାଉ
ଯେତେ ଯହିଁ ପ୍ରଜ୍ୱଳିତ ତୈଳ କୂପ
ସବୁ ଲିଭିଯାଉ
କ୍ଷେପଣାସ୍ତ୍ର ପ୍ରତିଯୋଗିତାରେ
ଟଳି ପଡ଼ନ୍ତୁ ଗୋଟାଏ ପରେ ଗୋଟାଏ ଶକ୍ତି
ଅନେକ ହେଲାଣି ଆମ ରେରେକାର ଖେଳ
ଏଥର ତେବେ ବିଷବାଷ୍ପରୁ ମୁକ୍ତ ହେଉ
ଆକାଶ, ପୃଥିବୀ ଓ ସମୁଦ୍ର
ପୁଣି ହସିଉଠୁ ସବୁଜ ଫସଲ ମଣିଷ ହାତର
ଉତ୍ପାଦନ ବୃଦ୍ଧି ହେଉ ଶସ୍ୟ ସଂପଦର
ଆହୁରି ସୁଷମା ବଢ଼ୁ
ଅଜନ୍ତା, କୋଣାର୍କ ଆଉ ତାଜମହଲର ।

ଆମରି ଘରକୁ ଆଉ ନ ଆସନ୍ତୁ କେହି
ଅସ୍ତ୍ରଧାରୀ ଅବା କେଉଁ ରାଜନୀତି ବୃଦ୍ଧିଜୀବୀ ଲୋକ
ଫୁଲଟିଏ ରହିଥାଉ ଆମ ଟେବୁଲରେ
କୋଇଲିଟି ଗାଉଥାଉ ପଣସ ଗଛରେ
ଫୁଟୁଥାଉ ଚମ୍ପା ଗଛେ ଫୁଲ
ଖେଳୁଥାନ୍ତୁ ନାନା ବର୍ଣ୍ଣର ପିଲାମାନେ
ଆମ ଅଗଣାରେ ।

ହସି ହସି ଆସୁଥାନ୍ତୁ ଆମ ଟେବୁଲକୁ
କାଳିଦାସ, ଟଲଷ୍ଟୟ, ଶ୍ରୀ ଗୀତଗୋବିନ୍ଦ
ସବୁ ଦେବଦେବୀ ଓ ଧର୍ମଶାସ୍ତ୍ର,
ବାଇବେଲ, ଗୀତା ଓ କୋରାନ
କାର୍ତ୍ତିକରେ ଜଳୁଥାଉ ଆକାଶ ପ୍ରଦୀପ
କାହା ପାଇଁ ଶଙ୍ଖ ବାଜୁଥାଉ ।



# ଆମର ନିୟତି

ଏଠି ଗୋଡ଼ ଖସିଯାଏ ଗାଧୋଇବା ବେଳେ
ଅକସ୍ମାତ ଆକାଶରୁ ହୁଏ ବଜ୍ରପାତ
ଆଞ୍ଜୁଳା ଆଞ୍ଜୁଳା ଦୁଃଖ ମିଳୁଥାଏ ଖାଲି
ସୁଖ ଆଶା କରି ଏଠି ବଢ଼ାଇଲେ ହାତ ।

ଡାକେ ଏଠି ଅନ୍ଧକାର ଗୋଟାଏ ପଟରୁ
ଆସୁଥାଏ ଅନ୍ୟପଟୁ ଆଲୋକ ଆହ୍ୱାନ
ଏହାରି ଭିତରେ ହୋଇ ସନ୍ତୁଳି କେବଳ
ବିତିଯାଏ ଚାହୁଁ ଚାହୁଁ ଆମରି ଜୀବନ ।

ଏଠି... ଯେ ବିଲକୁ କୋଡୁ ଆମେ ତାହାକୁ ହିଁ ମାଡୁ
ନ ହେଉ ସଫଳ କେବେ ବିଡ଼ା ବାନ୍ଧିବାରେ
ପାଣି ପାଖେ ଓଠ ନେଲେ ତାହା ଘୁଞ୍ଚିଯାଏ
ଅବଶେଷେ ରହୁ ଆମେ କାତର ଶୋଷରେ ।
ଆମ ଚାରିପଟେ ଖାଲି ପଙ୍କର କିଆରି
ହୋଇ ତହିଁ ଲଟପଟ ଚଳିବା କି ନିୟତି ଆମରି ?



# ଭାଗବତର କବି

ଏକମାତ୍ର ତୁମେ ହିଁ ବୁଡ଼ିଥିଲ ଭାବ-ସମୁଦ୍ରରେ
ପାଇଥିଲ ରତ୍ନ ଅସୁମାରି ।
ସଞ୍ଚିନାହିଁ କିଛି ଯାହା
ବାଣ୍ଟିଅଛ ଦିଗେ ଦିଗେ
ଅକୃପଣ ଭାବେ
ସେହି ଧନ ବିଚ୍ଛୁରିତ ଘରେ ଘରେ
ଭାଗବତ ଟୁଙ୍ଗୀରେ ଟୁଙ୍ଗୀରେ
ଭାବ ସମୁଦ୍ରର କବି ତୁମେ ଏକା ଅ-ଭାବ ଭୂମିରେ ।

ଏକମାତ୍ର ତୁମେ କବି ବେଢ଼ାରେ ବୁଲିଛ
ଅନେକଙ୍କୁ ଦେଖି ପୁଣି ଚିହ୍ନାଇଛ
ଗୋଟି ଗୋଟି କରି
ସମସ୍ତେ ସମାନ ଯହିଁ
ନାହିଁ ହିଂସା ଦ୍ୱେଷ
ମୈତ୍ରୀ ଓ ପ୍ରୀତିର ଭୂମି
ଯହିଁ ଖାଲି କରୁଣା ବରଷେ
ନାହିଁ ଭିନ୍ନାଭିନ୍ନ
ରାଜା-ପ୍ରଜା, ନାରୀ ଓ ପୁରୁଷେ ।

ତୁମେ ଏଠି ବିତରିଛ ଦୟଣା ଓ ତୁଳସୀ ମଞ୍ଜରୀ
ତୁମେ ପୁଣି ବୈତାଳିକ ସେଇ ଦିବ୍ୟ ରାଜ ଭବନର
ତୁମ ପାଇଁ ବନ୍ଦୀଶାଳା ଏଣୁ
ମୁକ୍ତିର ଦ୍ୱାର ସେହି ଦିବ୍ୟ ଦର୍ଶନର ।

ଏ ଜାତିର ତୁମେ ଦିବ୍ୟ ସୁବାସ ଚନ୍ଦନ
ହେବ କ'ଣ ସୀମାୟିତ ସାତ ଲହଡିରେ
ସଙ୍କୁଚିତ କୋଳାହଳ ତଳେ
କାରବାର, ଯନ୍ତ୍ରର ଘର୍ଘରେ !

ଆମେ ବା ବୁଝିବୁ କାହୁଁ
ଭାଗବତ ଦିବ୍ୟ ଅନୁଭବ,
ଧାଉଁ ଯେଣୁ ଧନ ଓ କ୍ଷମତା ପଛେ
ରାଜତୋଷଣରେ·
ବନିତା-ବିଳାସେ ଅବା ପରସ୍ପର ପ୍ରତିଯୋଗିତାରେ ।
ତଥାପି ସ୍ମରଣ କରୁ
ତୁମେ ଦେଲ ଆମ ମୁଖେ ଭାଷା
ଆମକୁ କରିଛ ବଡ଼, ଚିହ୍ନେଇଛ ଏଇ ଜଗତରେ ।

ହେ ସନ୍ନ୍ୟାସୀ, ସର୍ବତ୍ୟାଗୀ
ଆମ ପାଇଁ ଭିନ୍ନ ଏକ ଭୂମିଟିଏ ରଚି ଦେଇଗଲ
ନିଜେ ବୁଡ଼ି ଭାବ ସମୁଦ୍ରରେ ।

●

# ବାଟ

ବାଟ ସବୁ ଗଢ଼ାହୁଏ ମଣିଷ ହାତରେ
ମଣିଷ ହାତରେ ପୁଣି ତାହା ଉଜୁଡ଼ଇ
ବାଟଟି ସୁନ୍ଦର ହୁଏ ମଣିଷ ମେଳରେ
ହାତ ଧରାଧରି ହୋଇ ତା' ଉପରେ ଚାଲିବା ବେଳରେ ।

ମୁଁ ଖୋଜୁଛି ସେହି ବାଟ
ଯେଉଁଠାରେ ଫୁଟିଥିଲା ଫୁଲସବୁ
ଦୁଇ ପାଖ ଗଛମାନଙ୍କରେ
ଝୁଲୁଥିଲା ଫଳସବୁ ବିଭିନ୍ନ ଋତୁରେ
ବିଚିତ୍ର ସୌରଭ ଯହିଁ ଭାସୁଥିଲା ମନ୍ଦ ପବନରେ ।
ଏବେ ଆଉ ନାହିଁ ସେହି ବାଟ
ନାହିଁ ଏଠି ସେ ଶଗଡ଼ ଗାଡ଼ି
ବସି ଯହିଁ; ଢ଼ଳି ଢ଼ଳି ଯାଉଥିଲେ ଲୋକ
ଯାଉ ନାହିଁ ଆଉ ସେଠି
ଧାନ ଅବା ଚାଉଳ ଶଗଡ଼
ଆଉ ତ ଯାଉ ନାହାନ୍ତି ତା' ଉପରେ
ଭାର ଭାର ଦୁଧ ନେଇ ଯାଉଥିବା ଲୋକ ।
ଏ ବାଟରୁ ହୋଇଅଛି ଦୂର
ବାଲି ଆଉ କାଦୁଅର ସବୁ ଆଡମ୍ବର
ବକ୍ଷ ତା'ର ହୋଇଛି ମସୃଣ ପୁଣି ହୋଇଛି କୃଷ୍ଣାଭ
ଏଠାରୁ ଯାଉନି ଦେଖା ଦୂର ଦିଗ୍‌ବଳୟେ
ନୀଳାଞ୍ଜନପ୍ରଭ ଚାରୁ ଜଳର ପ୍ରବାହ

ଚନ୍ଦ୍ରିକା ଚର୍ଚ୍ଚିତ ରାତି ଥିଲା ତହିଁ କେଡ଼େ ମନୋରମ
ଏବେ ଏଠି କୃତ୍ରିମ ଆଲୋକ ।
ଆଉ ନାହିଁ ଦୁଇ ପଟେ କିଆ ଓ ଖଜୁରିଗଛ
ବହୁତ ବଢ଼ି ଗଲେଣି ଦୁଇପାଖେ ଝାଉଁଗଛ ସବୁ
ନିଶବ୍ଦ ଥିଲା ଯେଉଁ ବାଟ
କମ୍ପୁଅଛି ତାହା ଏବେ
ଦ୍ରୁତଗାମୀ, ଯାତ୍ରୀବାହୀ ଯାନର ଘର୍ଘରେ ।
କୁଆଡ଼େ ଗଲେଣି ସବୁ ଉଇହୁଙ୍କା
ନୟନଯୋଡ଼ିରେ ଥିଲେ ଯେତେ କଇଁଫୁଲ !
କୁଆଡ଼େ ଗଲେଣି ସେଇ ଝିଅମାନେ
ଯିଏସବୁ ଖୁଁଦୁରୁକୁଣୀରେ
ତୋଳୁଥିଲେ ଏଠି କଇଁଫୁଲ !
କୁଆଡ଼େ ଗଲେଣି ସେଇ ଟୋକା ସବୁ
ଏଠି ଯିଏ ଛେଳି ଆଉ ଗାଈ ଜଗୁଥିଲେ !
ଆହୁରି ସୁନ୍ଦର ଥିଲା ଏଇ ବାଟ
ଏହାରି ଉପରେ ଯେବେ
ହାତ ଧରାଧରି ହୋଇ ଲୋକେ ଚାଲୁଥିଲେ
ପଡୁ ପଛେ ସେମାନଙ୍କ ମୁହଁ ରଙ୍ଗା
ପାଦ ହେଉ ଅବଶ, ଅଶକ୍ତ;
ଏଠି ଥିଲା କେତେ ଗୋଟି ଛୋଟ ଚଟିଘର
ନେବା ପାଇଁ ତଥାପି ଆଶ୍ରୟ ।
ତୁମେ ଆଜି କାହିଁ କେତେ ଦୂରେ
ଆଉ ଥରେ ଆସିବ କି ତୁମେ ଏ ଯାଗାକୁ
ଆମେ ହାତ ଧରାଧରି ହୋଇ ପୁଣି ଚାଲିବା
ଏଇବାଟେ ସେଇ ନୀଳ ଦିଗ୍‌ବଳୟ ଯାଏ
ଯେଉଁଠି ଉଡୁଛି ନେତ ନୀଳଚକ୍ର ପରେ ।

●

# ଗଣକବି

ଏକ ଖିଆଲି ମନର ଆନନ୍ଦ
ଶବ୍ଦ ଓ ସ୍ୱରର ମୂର୍ଚ୍ଛନା ଭିତରେ ହଜିଗଲା;
ଅର୍ଦ୍ଧ ଶତାବ୍ଦୀର ସମସ୍ତ କୋଳାହଳ
ହାକିମଗିରି, ସଂଗ୍ରାମ ଓ ଭୋଟଯୁଦ୍ଧ
ଅଥବା ବ୍ୟବସାୟକୁ ଉପେକ୍ଷା କରି
ସେ ରଚିଲା ନୂତନ ଭୂମିକା ।
ସମୟର ନିର୍ଜନ ସୈକତେ
ରଚିଥିଲା ସେ ଏକ କୁଟୀର
ଗୀତ– ବାଦ୍ୟେ ଥିଲା ଯାହା ସଦା ମୁଖରିତ ।
କ୍ଲାରିଓନେଟର ବାଜାରେ
ଦୁଆରୀର ଗୀତରେ
ଜନତାର ହାତତାଳିରେ
ଗଢ଼ି ଉଠିଥିଲା ତା'ର ଜୟମାଲ୍ୟ ।
ତାହାରି ସନ୍ତାନ କେତେ ରଚିଗଲେ ଭାବର ତରଙ୍ଗ
ସ୍ମିତ ହସି ସେ କେବଳ ତାହାହିଁ ଦେଖୁଛି
ଜନତାର ଗହଣରେ ମମତାର ମଧୁ ସେ ଚାଖୁଛି ।
ମାନିନାହିଁ ନୀତି ଓ ଅନୀତି
ବହିଯିବା ଥିଲା ତା'ର ଧର୍ମ
ସେ ଯେମିତି ତଟିନୀର ଜଳ
ସେ ଯାଇଛି ଯେଉଁଆଡ଼େ
ଦୁଇ ତଟେ ହସାଇଛି ଫୁଲର ଫସଲ ।

●

# ମାରୀଚ

## (୧)

ରଜାଙ୍କ ଆଦେଶ ଶେଷରେ ମାନିବାକୁହିଁ ପଡ଼ିଲା ତୁମକୁ
ତା'ନୋହିଲେ ଆଉ କ'ଣ ବା ତୁମେ କରିଥାନ୍ତ
ବରଣ କରି ନେଇ ଥାଆନ୍ତ ମୃତ୍ୟୁର
ଶୀତଳ ଆଲିଙ୍ଗନ ?

ନା, ବରଂ ଭଲ ହେଲା,
ତୁମେ ବରଣ କରିନେଲ
ସେଇ ସୁବର୍ଣ୍ଣର ଆବରଣ
ସଫଳତାକାମୀ ପକ୍ଷେ ହୋଇଛି ଯା'
ଯୁଗେ ଯୁଗେ ସୁରକ୍ଷା କବଚ ।

ତା'ପରେ ଆଉ କିଛି ଅଭାବ
ରହିଲା ନାହିଁ ତୁମର
ସମାଧାନର ସୂତ୍ର ମିଳିଗଲା ଜଟିଳ ସମସ୍ୟାର
ରଜାଙ୍କ ସନ୍ତୋଷ ଲାଗି ତୁମେ ସମର୍ପି ଦେଲ ଆପଣାକୁ
ସମର୍ପଣ କରିଦେଲ ଆପଣାର ବୁଦ୍ଧି ଓ ବିବେକ ।
ଏଥର ପ୍ରଚୁର ନିରାପତ୍ତା
ରାଜା ସନ୍ତୁଷ୍ଟ
କର୍ତ୍ତାଙ୍କ ସୁଦୃଷ୍ଟି ପଡ଼ିଲେ
କ'ଣ ବା ନ ହୋଇପାରେ !

ପଙ୍ଗୁ ଲଂଘିପାରେ ଗିରି
ଗୋବର ଗଣେଷ ବି ହୁଅନ୍ତି
ବିଘ୍ନେଶ୍ୱର ପୂଜ୍ୟ ଗଣପତି
ରଙ୍ଗ ବି ବଦଳିଯାଏ ।

ସେଥିପାଇଁ ତୁମ ହାତ ମୁଠାକୁ ଚାଲିଆସେ
ଶକ୍ତି ଓ କ୍ଷମତାର ବାଗ ଦଉଡ଼ି
ଏବେ ଯେଣେ ଇଚ୍ଛା ତେଣେ
ନେଇ ହେବ ଜଥକୁ
ଏଥର ଆଉ ଡର କାହାକୁ ବା
ଭୟ କାହାକୁ ?

ଉପରଵାଲା ଯେବେ ଖୁସି
ହୁଅନ୍ତୁ ସେ ବିକୃତବାହୁ,
ଦୁଇବାହୁ, ଅବା ବିଂଶବାହୁ
କ'ଣ ଯାଏ ଆସେ ସେଥିରେ
ଏହାପରେ କପଟତା ହେଲା ତୁମର କର୍ମ,
ତୁମର ଅବଲମ୍ବନ
ଗତି ହେଲା ତୁମର କ୍ଷିପ୍ରରୁ କ୍ଷିପ୍ରତର
ବ୍ୟକ୍ତିତ୍ୱ ହେଲା ଆକର୍ଷଣୀୟ
ସନ୍ତାନ ସନ୍ତତି ହେଲେ ସୁରକ୍ଷିତ
ଅବସର ମିଳିଗଲା ବେପରୁଆ
ଜୀବନ ଯାତ୍ରାରେ ।

(୨)

ଏ ଯାତ୍ରା ତୁମର ହେବ ଶୁଭଙ୍କର ବିଜୟ ମଣ୍ଡିତ
ମାତ୍ର ତାହା ଘଟାଇବ ନିଶ୍ଚେ ଆଲୋଡ଼ନ
ରାଜରୋଷଗ୍ରସ୍ତ ବହୁ ପ୍ରଶାନ୍ତ ଭବନେ
କରାଇବ ଉଦ୍‌ବେଳିତ କ୍ରନ୍ଦନ ଆକୁଳ
ଆଲୋକ ଶିଖାକୁ ସିଏ କରିଦେବ ବିମଳିନ, ନିର୍ବାଣ ଉନ୍ମୁଖ
ହଜିଯିବ କେଉଁଆଡ଼େ ପୁଷ୍ପର ସୁରଭି,

ଶୁଭିବ ଚୌଦିଗେ ଖାଲି ନୀଡ଼ହରା ପକ୍ଷୀର କାକଳୀ
ଶୀତାଂଶୁରେ ଅନୁଭୂତ ହେବ ଘୋର ଚଣ୍ଡାଂଶୁ ପ୍ରତାପ
ଅଧରରୁ ଚାଲିଯିବ ହସ
ଶୁଖିଯିବ ଝରଣାର ନୀର ।

ହଁ, କାହାର ବା କ୍ଷୟ ନାହିଁ
ଶେଷ ହୋଇଯାଏ ଦିନେ
ସବୁ ମାୟା ସବୁ କପଟତା,
ଦିନେ ପୁଣି କ୍ଷିପ୍ରତାର ହୁଏ ଅବସାନ
ତୁମ ଅଭିଯାନ, ସଫଳତା
କାହିଁ ପୁଣି ଲିଭି ହଜିଯାଏ ।
ଦେହ ଓ ମନର ଯେତେ ସକ୍ରିୟ ଚେତନା, ଅନ୍ତର୍ଦାହ
ଧୀରେ ଧୀରେ ଲୁପ୍ତ ହୋଇଯାଏ ।
ତୁମ ଜୀବନରେ ଆସେ ସେଇପରି ବେଳ ଏକ
ଗଉରବ ଫଳସବୁ ଝଡ଼ି ପଡ଼ିବାର ।

ସେ ପତନ ହେଉ ପଛେ ଗୃହେ ଆକସ୍ମିକ,
ଶରାଘାତେ ପଥେ ବା ପ୍ରାନ୍ତରେ
ଅବା କେଉଁ ଚିକିତ୍ସାଳୟରେ
ଏ ପତନ ଜଗାଏ ଚମକ
ସମ୍ବାଦପତ୍ରର ପୃଷ୍ଠା କରେ ତା'ମଣ୍ଡନ
ଚିତ୍ର ତା'ର ହୁଅଇ ମୁଦ୍ରିତ
ତୁମେ ଯେଣୁ ଯୋଗ୍ୟ ବଚସ୍କର
ପ୍ରତାପୀ ରାଜାଙ୍କ
କର୍ମନିଷ୍ଠ ଅତୀବ ବିଶ୍ୱସ୍ତ ।

●

# ରଜାଟିଏ ଆମ ଲୋଡ଼ା

ଆପଣଙ୍କୁ ଆମେ ସିଂହାସନରେ ବସାଇଲୁ
ଖଞ୍ଜି ଦେଲୁ ଆପଣଙ୍କ ସେବାରେ
ସୁନ୍ଦର ପ୍ରାସାଦ, ଦାସ-ଦାସୀ
ଅର୍ପିଦେଲୁ ରାଜକୋଷ
ସ୍ୱୀକାର କଲୁ
ଯାହା କରିବେ ତା' ମାନିନେବୁ ନିର୍ବିଚାରେ
କରୁଥିବୁ ଜୟ ଜୟକାର
ଏହା ତ ହୋଇଛି ଆମ ଉତ୍ତରାଧିକାର ।
ଆମେ ହେବୁଁ ଶାସିତ
ଏହା ହିଁ ତ ଭାଗ୍ୟଲିପି ଆମର ।
ଆପଣ ହେବେ ଶାସକ
ହାନି ଲାଭ ବୁଝିବେ ଆମର ।
ଏହାଛଡ଼ା ଆଉ ଆମେ
କଅଣ ବା କରନ୍ତୁ
ସିଂହାସନେ ନ ବସାଇ ଆପଣଙ୍କୁ ?
ଆମେ ଏବେ ନିଶ୍ଚିନ୍ତ ହେଲୁ
ଯୋଡ଼ ହସ୍ତେ ଜଣାଇଲୁ –
ଉଦ୍ଧାର କର ଉଦ୍ଧାର କର ଆମକୁ
ଦୀର୍ଘ ଦିନ ବଂଚି ରହି ଦଳବଳ ସହ ।

ତା'ପରେ ଚାରଣ ସବୁ ଗାଇଲେ ପ୍ରଶସ୍ତି
ଆପଣ ଧୀରୋଦାତ୍ତ ନାୟକ ଆମ କାବ୍ୟର
ଆପଣଙ୍କୁ ଆଶ୍ରା କରି ଧନ୍ୟ ହେଲେ ସମସ୍ତ ସଦ୍‌ଗୁଣ
ଆପଣ ହିଁ ଏକାଧାରେ କବି, କଳାବିତ୍ ବୈଜ୍ଞାନିକ
କ୍ରୀଡ଼ାପ୍ରେମୀ, ବିଶ୍ୱପ୍ରେମୀ, ସର୍ବଜନପ୍ରେମୀ
ବନ୍ଦନୀୟ ଅମର ଭାସ୍ୱର ।

ଆପଣ ଉଲ୍ଲସିତ ହେଲେ
ଶୁଣାଇଲେ କାଳଜୟୀ ଭାଷଣ, ସରସ
ଆମେ ହେଲୁ ବହୁ ଆପ୍ୟାୟିତ,
ବିଗଳିତ ଆପଣଙ୍କ କଅଁଳ କଥାରେ
ପ୍ରଚୁର ପ୍ରତିଶ୍ରୁତି ଓ ଆଶ୍ୱାସନାରେ;
ତାଳିମାରି ଜଣାଇଲୁ ଅନେକ ବାହାବା ।

ଆପଣଙ୍କ ବିପୁଳ ପ୍ରତାପେ
ହୀନପ୍ରଭ ହୋଇଗଲେ ସମସ୍ତ ସାଧକ,
ଜ୍ଞାନୀ, ଗୁଣୀ, ସଜ୍ଜନ ମଣ୍ଡଳୀ ।

କିନ୍ତୁ ହାୟ, ଅକସ୍ମାତ୍ ଏକି ଅଘଟଣ
ଆପଣଙ୍କ ପକ୍ଷ ଛିଡ଼ିଗଲା, ପ୍ରଚଣ୍ଡ ଉତ୍ତାପରେ
ଆମେ ହେଲୁ ଶୋକାବିଷ୍ଟ, ସାହାହୀନ
ଏଣୁ, ପୁଣି ଖୋଜୁଅଛୁ ଆମେ
ଯିଏ ପୁଣି କରିବ ଶାସନ ଆମକୁ ନିର୍ଭୟେ
ଯେହେତୁ ରଜାଟିଏ ଆମର ଲୋଡ଼ା
ଏକାନ୍ତ ହିଁ ଲୋଡ଼ା ।

●

# ସେମାନଙ୍କ ପାଇଁ

ବହୁ ସଂଖ୍ୟାର ବୁଦ୍ ବୁଦ୍ ସେମାନେ
ଅନ୍ଧକାର ଗହ୍ୱରରୁ
ଗୋଟି ଗୋଟି ହୋଇ ବାହାରି ଆସନ୍ତି
କେଉଁଆଡ଼େ ଯିବେ ସେମାନେ ?
ସେ ଠିକଣା କାହାକୁ ବା ଜଣା !

ସେମାନଙ୍କ ପାଇଁ ଶୁଖି ଯାଇଛି କରୁଣାର ଝର
ଲିଭି ଯାଇଛି ସ୍ନେହର ସଳିତା
ସେମାନଙ୍କ ପାଇଁ କ୍ଷୀର ନାହିଁ, ଘର ନାହିଁ
ସେମାନେ କେବଳ ଘୂରି ବୁଲିବେ
ଦେଶୁଁ ଦେଶାନ୍ତର
ସେମାନେ ହେବେ ଉଦ୍‌ବାସ୍ତୁ
ଶରଣାର୍ଥୀ ଶିବିରର ସମ୍ମାନିତ ଭଦ୍ର ଅନ୍ତେବାସୀ ।

ଯିଶୁ, ଆଲ୍ଲା, କୃଷ୍ଣ ଅବା ବୁଦ୍ଧ
କିଏ ବା ଅଭୟ ଦେଲେ ସେମାନଙ୍କୁ
କେଉଁ ଧର୍ମ ବା ଅଛି ସେମାନଙ୍କର ?
ପାଠ ପଢ଼ିଲେ ବି
ସେମାନେ ହେବେ ଅସନ୍ତୁଷ୍ଟ ବେକାର ।
କ'ଣ ବା ସେମାନେ କରିବେ

ଯେଉଁ ଦଳ ଯାହା କହିଲେ
ସେମାନେ ସେଇଠି ମୁଣ୍ଡିଆ ମାରୁଥିବେ ।

ଏଣୁ ସେମାନଙ୍କ ପାଇଁ ଅଛି ମଡ଼କ ଓ ବନ୍ୟା
ଦୁରାରୋଗ୍ୟ ବ୍ୟାଧି, ଧୂଆଁ ଧୂଳି ଓ ପ୍ରଚଣ୍ଡ ଶବ୍ଦ
ବିସ୍ଫୋରଣର ଭୟ... ଭୟ ଆକସ୍ମିକ ଦୁର୍ଘଟଣାର
ଅଥବା ଛୁରିକାଘାତର ।

କଅଁଳ ଖରା, ଚନ୍ଦ୍ର ସୂର୍ଯ୍ୟର ଉଦୟାସ୍ତ
ଏ ସବୁ କ'ଣ ସେମାନେ ଦେଖିଛନ୍ତି ?
ଦେଖିଛନ୍ତି ସେ ନଈକୁ
ଯିଏ କୁଳୁ କୁଳୁ ଗୀତ ଗାଇ କାହିଁ ଚାଲିଥାଏ ।

ହ୍ରଦ କେମିତି ଶାନ୍ତିରେ ଶୋଇପଡ଼େ
କଳିକା କେମିତି ଧୀରେ ଫୁଲ ରୂପ ନିଏ ?
ଅନୁଭବ କରିଛନ୍ତି ସ୍ୱରର ପ୍ରବାହ
କିପରି ତା' ଭେଦି ଯାଏ ମରମ ଭିତରେ
ଭାବାମୟ ସ୍ୱଚ୍ଛ ପ୍ରଶାନ୍ତିରେ !

ସେମାନେ ତ ଅନ୍ଧାରୁ ଆସନ୍ତି
ଅବଶେଷେ ଫେରିଯାନ୍ତି ସେଇ ଅନ୍ଧାରକୁ ।

ସେମାନଙ୍କ ଆଗରେ କେବଳ ପ୍ରତିଯୋଗିତା
ଅଣନିଃଶ୍ୱାସୀ ଧାଇଁବାର କୁହୁକ ମାୟା
ତଥାପି ଚନ୍ଦ୍ରକୁ ହାତ ବଢ଼ାଇବା ନିତି
ବାମନର ଭାଗ୍ୟଲିପି ସିନା ।

●

# ଚଉପଦୀ

ସେ ପୁଷ୍ପିତା ଲତା ସମ ବଢ଼ିଥିଲା କେଡ଼େ ଶରଧାରେ
ଉଦ୍ଧତ ଯୌବନ ବିଭା ଫୁଟିଥିଲା ତା' କମ୍ର ତନୁରେ
ସୌରଭ ତାହାର ଦିନେ କରିଥିଲା ସକଳେ ମୋହିତ
ସମୟ-ସୈକତେ ସିଏ ହଜିଗଲା ଦିନେ ଅକସ୍ମାତ ।

ସେ ଦିନୁ ଖୋଜୁଛି ତାକୁ ଦେଖିବାକୁ ପଣ୍ଡିତ ସଭାରେ
ନଗରର ରାଜପଥେ ଅବା କେଉଁ ଗ୍ରାମ ପଥ ଧାରେ
କେଦାରେ, ପୁଳିନେ ପୁଣି ଜନପଦେ କେତେ ଅନ୍ତଃପୁରେ
ଏଇଠି ତ ଥିଲା ସିଏ ଚାଲିଗଲା କାହିଁ ଅଗୋଚରେ !

ଚାଲିଗଲା କାହିଁ ତାକୁ ଦେଖିବାକୁ କେତେ ମୁଁ ଖୋଜିଲି
ତଥାପି ତ ତିଳେ ହେଲେ ତା ବିଭବ କାହିଁ ନ ପାଇଲି ।

ଅବଶେଷେ ପଥକ୍ଳାନ୍ତ ମୁଁ ତାହାର ଲଭିଲି ସନ୍ଧାନ
ନୃତ୍ୟର ଆସରେ ସିଏ ରଚିଥିଲା ନିଭୃତ ଆସନ ।



# ସ୍ୱାଗତ ଜଣାଏ

ନୁହଁ ତୁମେ ଗୃହବଧୂ ଅଥବା ଜନନୀ
ତୁମେ କନ୍ୟା କେଉଁ ଏକ ଦୂର ରାଇଜର
ତୁମ ଲାଗି ଅଦିନରେ ଫୁଲ ଫୁଟେ
ଅକସ୍ମାତ୍ କୂଜଇ କୋକିଳ ।

ନୁହଁ ତୁମେ ଆଶ୍ରୟଲାଳସୀ ଲତା
ତୁମେ ନିତ୍ୟ ଛନ୍ଦମୟୀ ଶୁଭ୍ର କଲ୍ଲୋଳିନୀ
ସୁହାସିନୀ, ମଧୁର ଭାଷିଣୀ ।

ତୁମ ଲାଗି ଫୁଟି ଉଠେ ବହୁ ମାନସରେ
ସୁରଭିତ ଚାରୁ ଅରବିନ୍ଦ
ତୁମେ କର୍ମ-ନର୍ମମୟୀ
ଝରିଯିବାରେ ହିଁ ଖାଲି ଲଭିଛ ଆନନ୍ଦ ।

ନ ମାନିଣ ପ୍ରତିରୋଧ
ବହିଯାଅ ଦେଶୁଁ ଦେଶାନ୍ତରେ
ବିତରି ପ୍ରୀତି ଉଲ୍ଲାସ
ମଧୁ ଧାରା ଅନେକ ଅନ୍ତରେ ।

ତୁମ ଚାରୁ ଅଙ୍ଗ ସଂଚାଳନେ
ଫୁଟି ଉଠେ ଏ ଭୂମିର କଳା ଓ ସଂଗୀତ
ବହିଯାଏ ଦୂରାନ୍ତରେ ତୁମରି ପ୍ରବାହେ
ସେଥିପାଇଁ ହସ୍ତ ମୋର ପ୍ରସାରିତ
ତୁମକୁ ମୁଁ ସ୍ୱାଗତ ଜଣାଏ ।



# ସମ୍ଭ୍ରାନ୍ତ ବଣିକ୍

ଆଦରର ଯେତେ ସବୁ ମୋ ସପନ ଫୁଲ
ଯେତେ ସବୁ ମୋ ଆକାଶ ସମୁଜ୍ଜ୍ୱଳ ଜ୍ୟୋତି
ତମେ କି ଜାଣିଛ କେଉଁ ବିପଣୀର ଉଷର ତଟରେ
କିଏ ସବୁ ଆରାମରେ ବସି
ମାରୁଛନ୍ତି ବାହାସ୍ଫୋଟ
ସେ ସବୁର କରୁଛନ୍ତି ମୂଲ ?

ଏ ନୁହେଁ ବିଚିତ୍ର କଥା
ଏମିତି ତ ହେଉଅଛି ଏବେ
ଜାଣିଛ କି କିଏ ସବୁ ଏ ବଣିକ ଦଳ
ନ ଜାଣିଛ ଯଦି
ବାହାରକୁ ସନ୍ତର୍ପଣେ ଆସି
ଦେଖିଯାଅ ସେମାନଙ୍କୁ
ଦେଖ ସେମାନଙ୍କ କାମ
ସେମାନେ କି ସତରେ ସମ୍ଭ୍ରାନ୍ତ !

ହଁ, ନ ହେବ ବା କାହିଁକି ଏପରି
ଆଜି ତ ପାଲଟିଛନ୍ତି ସକଳେ ବଣିକ

ସେଇମାନେ ସମ୍ଭ୍ରାନ୍ତ ଓ ଶକ୍ତିମାନ ଆଜି ।
ହେ ଆମର କୁହାଳିଆ ବଣିକ ମଣ୍ଡଳୀ
ଦୂରରେ ରହନ୍ତୁ ଏବେ
ଶ୍ରେୟ ତାହା ସମସ୍ତଙ୍କ ଲାଗି ।

ଜାଣନ୍ତି ତ ହଜିଯିବେ ସର୍ବାଗ୍ରେ ଆପଣ
ଖତରା ହୋଇବ ସବୁ ଚକ୍ ଚକ୍ ଦିଶୁଥିବା
ଆପଣଙ୍କ ପଣ୍ୟର ସମ୍ଭାର
କେବେ ହେଲେ ଥୁଆ ହେବ ନାହିଁ ତା' ଥାକରେ ।

ପଉଷର ଶୀତ ସରିଯିବ
ଚାଲିଯିବ ମଧୁ ଋତୁ
ସିଏ ପୁଣି ଅବଶ୍ୟ ଆସିବ
ସେତେବେଳେ ଥିବ ଟିକି ଏ ପଣ୍ୟ ସମ୍ଭାର !
ହଁ, ମୁଁ କିନ୍ତୁ ରଖିଛି ମନେ
ଏଇଠାରେ ମୋ ଫୁଲର ନାମ ଗୋଟି ହଜିଗଲା
ହଜିଗଲା ବସନ୍ତର ନବ କିଶଳୟ ।

ହେଇ ଶୁଭୁଛି ସେମାନଙ୍କ ପାଦଶବ୍ଦ, ଅଟ୍ଟହାସ୍ୟ
ହଁ ସେଇମାନେ ଆସୁଛନ୍ତି... ସେ ବେପାରୀ ଦଳ
ଆସୁଛନ୍ତି ମାଳ ମାଳ ହୋଇ
ଏମାନଙ୍କ ଛାତିରେ ବେପାରୀର ଚିହ୍ନ ମରା ହୋଇଛି
ଏମାନେ ତଳକୁ ଉପର କରନ୍ତି
ଉପରକୁ ଖସାଇ ଦିଅନ୍ତି ତଳକୁ
ଏହାହିଁ ତ ସେମାନଙ୍କ କାମ ।

ହେ ମୋର ଆକାଶର ସ୍ୱପ୍ନ
ଧରଣୀର ଗୋଟି ଗୋଟି ଫୁଲ
ତମେ ସବୁ ଏବେ ଶୋଇ ପଡ଼
ଏଇ ବେପାରୀଙ୍କ ଠାରୁ ରହିଥାଅ ଦୂରରେ
ସେଥିରେ ହିଁ ତୁଷ୍ଟ ହୁଅ, ତୃପ୍ତ ହୋଇ ରୁହ
ନିଶ୍ଚୟ ଆସିବେ ଦିନେ
ଆଉ ଦଳେ ଚିହ୍ନରା ବଣିକ
ମୂଲ କରିବାକୁ ତୁମ
ଆକାଶର ଜ୍ୟୋତିକୁ ଓ ସ୍ୱପ୍ନର ଫୁଲକୁ ।

●

# ବିବସ୍ତ୍ର

ମୁଁ ତୁମକୁ ହାତୀ ଦେବି
ଘୋଡ଼ା ଦେବି
ଜଳ ଦେବି, କଳ ଦେବି
ଦେବି କାରଖାନା
ତୁମେ ଖାଲି ଟେକି ଥାଅ
ମୋର ସେଇ ବାନା
ବଜାଉଥାଅ ଆନନ୍ଦେ
ମୋ' ପେଁକାଳି
ମୋ କଥାରେ ମାରୁଥାଅ ତାଳି
ଏକମାତ୍ର ମୁଁ ତୁମର ପ୍ରିୟ ବନମାଳୀ ।

ତୁମେ ପରା ଉପରକୁ ଉଠାଇଛ ମୋତେ
ଉପରେ ମୁଁ ଖେଳୁଅଛି ଦୋଳି
କଦମ୍ବ ଗଛରେ
ତୁମେ ଏବେ ହାତ ଟେକି
ଲୁଗାପାଇଁ ଚାହିଁ ଥାଅ ଯମୁନା ଜଳରେ ।



# ଯାତ୍ରାର ରହସ୍ୟ

(୧)
ଦିନେ ସିଏ ଦେହର ପୀଡ଼ାରୁ
ମୁକ୍ତି ଲଭି କାହିଁ ଚାଲିଗଲା
ଚାଲିଗଲା ଛାଡିଦେଇ ତାର ସନ୍ତାନଙ୍କୁ
ଯାହାଙ୍କୁ ସେ ଆଣି ଏ ଜଗତେ
ପାଳିଥିଲା ସ୍ତନ୍ୟ ଦେଇ କେତେ ମମତାରେ ।

ଛାଡ଼ିଗଲା ଘର-ଦ୍ୱାର, ଲୁଗାପଟା,
ଦିଅଁଙ୍କ ଖଟୁଲି
ଛାଡ଼ିଗଲା ସବୁ ଆମ ପାଇଁ
ଛାଡ଼ିଗଲା କେତେ ସ୍ମୃତି
କେତେ ସ୍ନେହ, କେତେ ଅଭିଳାଷ ।

ଆମ ଲାଗି ଯା' ମୁହଁରେ ରହିଥିଲା ଲାଖି
ଅନେକ ସେନେହ, ଆଶା
ଆମେ ତାର ସଜାଡ଼ିଲୁ ଜୁଇ
ତା'ପାଦେ ପ୍ରଣାମ କରି
ତାହା ମୁଖେ ସଂଯୋଜିଲୁ ନିଆଁ ।

(୨)

ସବୁ ଆମ ଅବିଚାର ଅକ୍ଷମତା ସତ୍ତ୍ୱେ
କିଏ ଆଉ ମନାସିବ କୁଶଳ ଆମର
ସ୍ୱାର୍ଥ ଘେରା ଏଇ ଜଗତରେ ?
ଏଠି ତ ସକଳେ
ଯେଝା କାମେ ଯିଏ ଚାଲିଛନ୍ତି
ଆମ ଲାଗି ଭ୍ରୂକ୍ଷେପ କାହାର ?

କିଏ ଏଠି ଇର୍ଷା କରେ
କିଏ ଅବା ଚାହେଁ ଭାଗ
ନେବ ଆମ ଠାରୁ
କିଏ ବା ହିସାବ କରି ସ୍ନେହ କରେ;
ମାତ୍ର ତାର ସ୍ନେହ ଥିଲା ପ୍ରତ୍ୟାଶା ରହିତ
ଖାଲି ସ୍ନେହ ପାଇଁ ସିଏ ସ୍ନେହ କରୁଥିଲା
ଆମକୁ ସେନେହ କରି
ସତେକି ସେ ଆପଣାକୁ ସ୍ନେହ କରୁଥିଲା !

ସିଏ ଆଉ ନ ଦେଖିଲା କିଛି
ସିଏ ଆଉ ନ ପାରିଲା ଶୁଣି
ମନ୍ଦିରକୁ ସିଏ ଆଉ ନ ପାରିଲା ଯାଇ
ଅବଶେଷେ ତା ନିଶ୍ଚଳ ଦେହ ଗଲା
ସରଗ ଦ୍ୱାରକୁ
ଅବା ସ୍ୱର୍ଗଦ୍ୱାର ବାଟେ ଅଶରୀରୀ ସତ୍ତା ତାର
ଗଲା ପୁଣି ସେଇ ମନ୍ଦିରକୁ
ଯେଉଁଠାରୁ ସିଏ ଆସିଥିଲା
ଏ ରହସ୍ୟ ଆମେ ଯାହା ନ ପାରିଲୁ ବୁଝି ।

●

# ଅନ୍ତରଙ୍ଗ

ତାଙ୍କୁ ଆସିବା ଦେଖିଲେ
ମନେହୁଏ, କପାଳ ଖରାପ ଆଜି
ମାତ୍ର କହିବାକୁ ପଡେ—
‘‘ଆଜି ମୋର ବହୁ ଭାଗ୍ୟ
ଯା’ହେଉ ହେ ବନ୍ଧୁ ମୋର
ଏତେ ଦିନେ ଆପଣଙ୍କ ପାଦଧୂଳି
ଏଠାରେ ପଡ଼ିଲା ।’’

ସେ ଆସି ବସନ୍ତି ପାଖେ
ହସି ହସି ପଚାରନ୍ତି— ‘କେମିତି ଅଛନ୍ତି ?’
ମୋତେ କହିବାକୁ ପଡ଼େ—
‘‘ମନ୍ଦ ନୁହେ, ଚାଲିଛି ଏମିତି ।’’
ଯଦିଓ ମୁଁ ଅତି ଦୁଃଖେ କଟାଉଛି କାଳ
ଅବସ୍ଥା ମୋ ଆଦୌ ଭଲ ନୁହେଁ ।

ମୁଁ ଭାବିଲି—
ସେ ସବୁ ଏହାଙ୍କୁ କହି ଲାଭ ବା କଅଣ !
ଇଏ ତ ତାଙ୍କର କିଛି ସୁବିଧାର ଲାଗି

ଆସିଛନ୍ତି ଏବେ ମୋ ପାଖକୁ ।
ବିନା କାମରେ କି ଇଏ ଆସିବା ମଣିଷ !
ଯାହା ପାଖେ ହାବୁଡିବେ
ତାହାଙ୍କ ଠାରୁ ସେ
ଅବଶ୍ୟ ଫାଇଦା କିଛି ନିଶ୍ଚୟ ଲୁଟିବେ ।

ସେ କିନ୍ତୁ କହନ୍ତି ଧୀରେ—
''ତୁମ ଭଲ ପାଇଁ ଖାଲି
ଆସିବାକୁ ହେଲା ଆଜି ମୋତେ ।''

ମୁଁ କିନ୍ତୁ ଭାବିଲି—
ଇଏ ସବୁ ମିଛ କଥା, କେବଳ ବାହାନା
ଶୀଘ୍ର ସେ ଏଠାରୁ ଗଲେ ପାଇବି ନିଷ୍କୃତି ।

ଏଣୁ ମୁଁ କହିଲି—
''ଏବେ ମୋର ବେଳ ନାହିଁ
ଥାଉ ଦିନେ ନିଶ୍ଚୟ ଆସିବେ ପୁଣି
ଖୁସି ହେଲି ଏତେଦିନେ
ଆପଣଙ୍କ ଦରଶନ ଲଭି ।''



# ଯେଉଁଠି ମିଶଇ ସବୁ

(୧)

ନୀଳ ସାଗର ବସନା ହେ ଧରଣୀ ଦିବ୍ୟା ଅନୁପମା
ଅନନ୍ତ ସୁଷମାମୟୀ ଗିରି କିରୀଟିନୀ
ନଦନଦୀ ବିଭୂଷିତା ଚରାଚର ଆଶ୍ରୟ ଦାୟିନୀ
କରୁଛ ପାଳନ ତୁମେ ସହି ବହୁ ପୀଡ଼ନ ତଥାପି
ଅନନ୍ତ କରୁଣାମୟୀ ହେ ଜନନୀ ଶସ୍ୟ ପ୍ରଦାୟିନୀ
ଜନନୀ ପାଳିକା ହୋଇ ସକଳ ପ୍ରାଣୀର
ଶେଷେ ସବୁ ମିଶାଉଛ ତୁମରି ଦେହରେ
ହେ ପବିତ୍ରା ମାତା ମାଟି ! ଘେନ ମୋର ସକଳ ପ୍ରଣତି ।

(୨)

ତୁମେ ଜୀବନ ଦାୟକ ନିଖିଳ ସୃଷ୍ଟିର
ବିକଶିତ ହୁଏ ପ୍ରାଣ ତୁମ ଯୋଗୁଁ କମଳର ସମ
ତୁମେ ହିଁ ରହିଛ ନିମ୍ନେ, ଉର୍ଦ୍ଧ୍ୱେ ପୁଣି ଦେହ ଅଭ୍ୟନ୍ତରେ
ତୁମ ଯୋଗୁଁ ପ୍ରାଣ ପୁଣି ହୁଅଇ ବର୍ଦ୍ଧିତ
ତୁମରି ବିହୁନେ ସୃଷ୍ଟି ହୋଇଥାଏ
ଜୀବହୀନ ଶୁଷ୍କ ମରୁମୟ
ସବୁ ଶେଷେ ମିଶିଯାଏ ତୁମରି ପ୍ରବାହେ
ଜୀବନ ସ୍ୱରୂପୀ ଦେବ
ତୁମକୁ ଅର୍ପୁଛି ଏଣୁ ସକୃତଜ୍ଞ ଅପ୍ରମିତ ପ୍ରଣତି ମୋହର ।

(୩)

ତେଜରୂପୀ ହେ ଦେବତା ତିମିର ନାଶକ
ପ୍ରାଣର ପ୍ରତୀକ ତୁମେ
ତୁମ ବିନା ସବୁ ଜଡ଼ ସବୁ ସୁଶୀତଳ
ଶୈତ୍ୟ ନିବାରକ ତୁମେ କଲୁଷାପହାରୀ
ତୁମେହିଁ ତ ମୂଳାଧାର ସକଳ ଦୀପ୍ତିର
ତୁମେ ପୁଣି ହୁତାଶନ ବିନାଶର ହେତୁ
ତପନ ସ୍ୱରୂପୀ ଦେବ ତୁମକୁ ମୋ କୋଟି ନମସ୍କାର ।

(୪)

ହେ ମରୁତ ! ପ୍ରାଣର ଆଧାର
ତୁମକୁ ସାଥିରେ ନେଇ ଜଗତକୁ ଆସିଥାଏ ପ୍ରାଣୀ
ତୁମକୁ ନେଇ ସେ ବଂଚେ
ତା'ପରେ ମିଶାଇ ଦିଏ ଆପଣାକୁ ତୁମରି ପ୍ରବାହେ
ହେ ଅରୂପ, ହେ ମୃଦୁଳ, ହେ ମହା ପ୍ରଚଣ୍ଡ
ତୁମକୁ ଜଣାଏ ମୋର ଅଜସ୍ର ପ୍ରଣାମ ।

(୫)

ହେ ଅନନ୍ତ ସୀମାହୀନ ବ୍ୟାପ୍ତିର ସାଗର
ତୁମଠାରେ ଏକୀଭୂତ ଦୃଶ୍ୟ ଓ ଅଦୃଶ୍ୟ ଯେତେ
ବସ୍ତୁ ପୁଂଜ ଏ ମହା ବିଶ୍ୱର
ଯାର ନାହିଁ ପରିମାପ
ତୁମ ଯୋଗୁ ସ୍ଥିତିର କଳନା ହୁଏ
ତଥାପି ନିର୍ଲିପ୍ତ ତୁମେ ମହା ଶୂନ୍ୟରୂପୀ
ରଙ୍ଗହୀନ ତଥାପି ବିଚିତ୍ରବର୍ଣ୍ଣା ସୁନୀଳ ସୁନ୍ଦର
ବୁଦ୍‌ବୁଦ୍ ସମାନ ଯହିଁ ହୁଅନ୍ତି ବିଲୀନ
ଭାସମାନ, ସଜୀବ ନିର୍ଜୀବ
ହେ ମହା ଦୁରଧିଗମ୍ୟ ! ତୁମ ପଦେ କୋଟି ନମସ୍କାର ।

# ଚଟିଘର

କାହା ପାଦ ଚିହ୍ନ କାହିଁ ରହି ନାହିଁ ଏଇ ଚଟାଣରେ
ନ ରହୁ ପଛକେ ତାହା
ରହିଥାଉ ଏହା ସଦା ଶୁଚିବନ୍ତ ହୋଇ
ଯଦିଓ ଯାଇଛି ହଜି ଏଇଠାରେ
ଯେ ଆସିଛି ସେମାନଙ୍କ ଦୀର୍ଘଶ୍ୱାସ, ଆଶା ଓ ବିଶ୍ୱାସ
ଅସୀମ ବେଳାଭୂମିରେ ପାଦଚିହ୍ନ ନ ରହିଲା ପରି ।

ଏଇଠାରେ ପଡୁଥାଉ ସମସ୍ତଙ୍କ ପାଦ
ଆଲୋକ ବିଚ୍ଛୁରି ପଡୁ ଏହିଠାରୁ ସମସ୍ତ ଦିଗକୁ
ଏଇଠାରେ ରହିଥାଉ ଖଣ୍ଡକ୍ଷୀର
ତୁଳସୀ ଓ ବେଲପତ୍ର, ଚୁଆ ଓ ଚନ୍ଦନ ।

ମାତ୍ର ଏଠି ନ ରହୁ କଦାପି
ଖଣ୍ଡା, ତଲୁଆର ଅବା ଷ୍ଟେନ୍‌ଗନ୍ ସବୁ
ନ ହେଉ ମନ୍ତ୍ରଣା ଏଠି ଅତି ଗୋପନରେ
ସାଧିବାକୁ କାହା ଅକଲ୍ୟାଣ ।

ସମସ୍ତଙ୍କ ଶୁଭ ବୁଦ୍ଧି ଯେଣୁ ଏଇଠାରେ
କେଉଁ କାଳୁ ହୋଇଅଛି ଠୁଳ
ସମସ୍ତଙ୍କ ଆଶା ଯେଣୁ ସ୍ତୂପୀକୃତ ଅଛି ଅଲକ୍ଷ୍ୟରେ
ସମସ୍ତଙ୍କ ସମର୍ପିତ ଧୂପ ଦୀପ ଫୁଲ ଓ ନୈବେଦ୍ୟ
ସବୁ ଭଲ ଇଚ୍ଛା, ପୁଣି ଊର୍ଦ୍ଧ୍ୱମୁଖୀ ସକଳ ଚେତନା
ଏହିଠାରେ ରୂପବନ୍ତ ହୋଇଅଛି ତାହା !

ସବୁ ଦୀପର ଆଲୋକ ମିଶିଯାଇ
ଉପରକୁ ଦେଖାଉଛି ବାଟ
ଚାରିଆଡ଼େ ଦେଉଛି ତା' ବିମଳ ଆଲୋକ
ନେବା ପାଇଁ ଏଠାରେ ଆଶ୍ରୟ ।
ହେଉ ଏହା ସମସ୍ତଙ୍କ ଶେଷ ଚଟିଘର
ପାଦ ଚିହ୍ନ ନ ରହୁ ପଛକେ ।



# ଶ୍ରୀକ୍ଷେତ୍ର ତୁମରି

ଯେଉଁଠାରେ ଅନାୟାସେ ଝରିଗଲା
ପୃଷ୍ଠାସବୁ ବହୁ ଶତାବ୍ଦୀର
କେତେ ଜୟଯାତ୍ରା ଆସି
ଯେଉଁଠାରେ ହୋଇଲା ନୀରବ
କେତେ ଚେତନାର ଝଡ଼
ଯେଉଁଠାରେ ହେଲା ପ୍ରଶମିତ
ବହିଗଲା ଯହିଁ କେତେ
ସାମୁଦ୍ରିକ ପ୍ରଚଣ୍ଡ ବିତ୍‌ପାତ
ସେଇଠି ଶାଶ୍ୱତ ତୁମେ
ହାତ ଯହିଁ ଯୋଡ଼ି ହୋଇଯାଏ
ତୁମ ଲାଗି ଝରିଯାଏ କଣ୍ଠରୁ ସଙ୍ଗୀତ ।

ସେଇଠି ହୁଅନ୍ତି ଠୁଳ
କ୍ଳାନ୍ତପକ୍ଷ, ଅବଶ, ଆତୁର
ବିଷାଦର ପକ୍ଷୀ ସବୁ କେତେ ଦୂରୁଁ ଆସି
କିଏ ପୁଣି ସମର୍ପନ୍ତି ଶ୍ରୀକ୍ଷେତ୍ରେ ତୁମରି
ଧୂପ, ଦୀପ, ଫୁଲ ଆଉ ଚନ୍ଦନ ତୁଳସୀ ।

ଅନାହତ ସେ ପ୍ରବାହ
ପ୍ରବାହିତ ଯୁଗୁଁ ଯୁଗାନ୍ତର
ହୋଇନାହିଁ ବିରାମ ଯାହାର ।

ଆନନ୍ଦ ପ୍ରୟାସୀ ବହୁ ଦୂରାଗତ ଶ୍ରାନ୍ତ ପଥିକର
କଲରୋଳ ଏବେ ମଧ୍ୟ ଏଠି ଶୁଣାଯାଏ
ତୁମ ଲାଗି କେତେ ଆୟୋଜନ ଯହିଁ ଚାଲିଥାଏ ।

ଏହିଠାରେ ତୁମ ସେବାକାରୀ
ହୋଇଛନ୍ତି ଏ ଦେଶ ରାଜନ
କିଏ ପୁଣି ତରବାରୀ, ମୁକୁଟ ବରଜି
ନେଇଛନ୍ତି ତୁମରି ଶରଣ ।

ଧନିକ ବଣିକ କେତେ
କରିଛନ୍ତି ବିଭବ ପ୍ରଦାନ
ଲଭିଛନ୍ତି ବରାଭୟ
ଏ ଭୂମିରେ କଳାକାର ବହୁ ଗୁଣୀଜନ
କରିବାକୁ ଏ ଜାତିର ଶତ୍ରୁ ନିବାରଣ
ବିପନ୍ନ କାଳରେ କେତେ ବିନୟ ପ୍ରାର୍ଥନା
କରିଛନ୍ତି ସାଧୁ, ସନ୍ଥ ଜନ ।

ଏ କି ବିଡ଼ମ୍ବନା ଏବେ
ଆସୁଛନ୍ତି ପୁଣି ଏ ଭୂମିକୁ
ବେପାରିଏ ଲୁଟିବାକୁ ଏହାର ବିଭବ
କଳୁଷିତ କରିବାକୁ ଏହାର ସ୍ୱଚ୍ଛତା
ପ୍ରଚାରିତ ହେଉଅଛି କି ବିଚିତ୍ର ସ୍ୱଦେଶୀ ମମତା !

ତୁମେ କି କରିବ କ୍ଷମା ସେମାନଙ୍କୁ କେବେ
ଉପେକ୍ଷିତ ହୋଇବ କି ଜନତା କଲ୍ୟାଣ
ସବୁତ ତୁମରି ଇଚ୍ଛା
କେ କରିବ ତାର ଆକଳନ ?

●

# ନକରି ବିଶ୍ୱାସ

କେଉଁଠି ବା ତୁମକୁ ମୁଁ ପୂରାପୂରି କରିଛି ବିଶ୍ୱାସ
ତୁମରି ମହିମା ବସି କେବେ ବା ଭାଳିଲି
କେବେ ଅବା ସମର୍ପିଲି ତୁମକୁ ମୋ ସାମାନ୍ୟ ସଂପଦ
ମୋହରି ଭିତରେ ମୁଁ ତ ବନ୍ଦୀ ହୋଇ ସଦା ରହିଗଲି ।

ତୁମଠାରୁ ଆପଣାକୁ ନେଇଛି ଦୂରେଇ
ତୁମରି ଉପରେ ଖାଲି ରାଗିଛି, ରୁଷିଛି
ଲାଭ ହୁଏ ନାହିଁ କିଛି ରାଗିଲେ ରୁଷିଲେ
ସେଇ କଥା ଏବେ ମୁଁ ବୁଝୁଛି ।

ଭଲ ପାଇବାରେ ସିନା
ତୁଟି ଯାଏ ସବୁ ରାଗ ରୋଷ
ତୁମେ ଏବେ କ୍ଷମା କର
ଦିଅ ମୋତେ ପରମ ବିଶ୍ୱାସ ।

ତୁମ ସହାୟତା ବିନା
ତିଳେ ହେଲେ ଶକ୍ତି ନାହିଁ ମୋର
କରି ଯିବା ପାଇଁ କାମ
ଭାଳୁ ଅଛି ଯାହା ମୁଁ ନିଜର ।

# ଶେଷାବତରଣ

ଅନାୟାସେ ଅବା କ୍ଲାନ୍ତ ପଦେ
ପାହାଡ଼ରେ କେତେ ବାଟ ଉଠିଗଲା ପରେ
ଆରମ୍ଭ ହୁଅଇ ପର୍ବ ଅବତରଣର
ବିସ୍ମୟ ପୁଲକ ମିଶା ନୂତନ ଅଧ୍ୟାୟ ।

ପାହାଚ ମାଳା ସେପରି ଅତିକ୍ରମି ଗଲେ
ପହଞ୍ଚି ହୁଅଇ ଏକ ପୂତ ଚତ୍ୱରରେ
ଦୀପ ଆଲୋକିତ ଦିବ୍ୟ ସିଂହାସନ ପାଶେ
ଦେବତା ଦର୍ଶନ ଅବା ମିଳଇ ଯେଉଁଠି ।

ଧୀରେ ସନ୍ତର୍ପଣେ ପଛେ ହେଉ ସେହି ଯାତ୍ରା
ଅନ୍ଧକାରେ ଗଲା ପରେ ମିଳିବ ଆଲୋକ
ଦେଖାଯିବ ସେ ଦୃଶ୍ୟ ପରମ
ମିଳିଯିବ ପ୍ରାପ୍ତିର ମାଧୁର୍ଯ୍ୟ
ବଚନେ ଯା' ନ ହେବ ପ୍ରକାଶି
ହୃଦୟେ କେବଳ ଯାହା ହେବ ଅନୁଭୂତ ।

ତୃଷ୍ଣାରେ କାତର ହେବା
ତାହା ପରେ ତହିଁରୁ ନିବୃତ୍ତି



ଆଧୁନିକ ଓଡ଼ିଆ କାବ୍ୟ-ପରମ୍ପରାର ଅନ୍ୟତମ ପ୍ରମୁଖ-ପୁରୁଷ – ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) । ୧୯୫୧ ମସିହାରେ ପ୍ରକାଶିତ ତାଙ୍କର ପ୍ରଥମ କାବ୍ୟଗ୍ରନ୍ଥ 'ତିର୍ଯ୍ୟକ୍' ତାଙ୍କୁ ସେଇ ସମୟରୁ ହିଁ ଦେଇ ଆସିଛି ଅନନ୍ୟ କବିପ୍ରସିଦ୍ଧି ।

ଆଧୁନିକ କବିତା କ୍ଷେତ୍ରରେ ନାନା ପରୀକ୍ଷା ନିରୀକ୍ଷାର ମୁଦ୍ରାଙ୍କନ, ତାଙ୍କର ଅଜସ୍ର କବିତାରେ ସୁସ୍ପଷ୍ଟ । କିନ୍ତୁ ଅଧ୍ୟାପନା ଜଗତରେ ଦୀର୍ଘ କାଳର ଅବସ୍ଥିତି, କବି ଜାନକୀବଲ୍ଲଭଙ୍କୁ କ୍ରମେ ମୁହାଁଇ ନିଏ ଆଲୋଚନା-ସମାଲୋଚନାର ଘନ ଅରଣ୍ୟ ମଧ୍ୟକୁ । ଜଣେ ସୁଖ୍ୟାତ ସମାଲୋଚକ ଭାବରେ ତାଙ୍କର ପ୍ରତିଷ୍ଠା, ତାଙ୍କ ନିଜସ୍ୱ କାବ୍ୟପ୍ରତିଭା ପାଇଁ କିନ୍ତୁ ହୋଇଉଠେ ଏକ ଅଲଂଘନୀୟ ଅନ୍ତରାୟ ! କବିତାର ସବୁଜ ଶ୍ୟାମଳ ପୁଷ୍ପିତ ପୃଥିବୀକୁ ପରିତ୍ୟାଗ କରି, ସେ କ୍ରମେ ଆଗେଇ ଯାଆନ୍ତି ଗଦ୍ୟର ଗୈରିକ ସାମ୍ରାଜ୍ୟ ଆଡ଼େ । ଓଡ଼ିଆ ଗୀତିକାବ୍ୟ ସମ୍ପର୍କରେ ଗବେଷଣା ଯୋଗୁ ତାଙ୍କୁ ମିଳେ ଡକ୍ଟରେଟ୍ ଡିଗ୍ରୀ ।

ତଥାପି କବିତା ତାଙ୍କର ନିଭୃତ ହୃଦୟର ଉଲ୍ଲାସ । 'ଶେଷାବତରଣ' — ତାଙ୍କ କବିପ୍ରତିଭାର ସଦ୍ୟତମ ସ୍ୱାକ୍ଷର ।

ପ୍ରସାଦ ପ୍ରକାଶନୀ



"ପୁଷ୍ପକ"
ମଧୁପାଟଣା, କଟକ-୧୩